# ପୃଥିବୀର ଲୋକକଥା

( ଭିଏତ୍‌ନାମ )

ଶ୍ରୀମତୀ ଅନ୍ନପୂର୍ଣ୍ଣା ମହାନ୍ତି, ଏମ୍.ଏ., ବି. ଇଡ୍.

ସମ୍ପାଦନା

ଶ୍ରୀ ଲକ୍ଷ୍ମୀଧର ମହାନ୍ତି, ବି.ଏସ୍‌ସି., ଏଲ୍. ଏଲ୍. ବି.

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ

# ପୃଥିବୀର ଲୋକକଥା

( ଭିଏତ୍‌ନାମ )



ପ୍ରକାଶକ :

**ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ**

ପୋ : ବଢ଼ାଳ, ଜି : ପୁରୀ

ଚତୁର୍ଥ ସଂସ୍କରଣ : କାର୍ତ୍ତିକ ପୂର୍ଣ୍ଣିମା ୨୦୦୩

ପ୍ରଚ୍ଛଦ ପଟ୍ଟ :

ଶ୍ରୀ ରବିନାରାୟଣ ନାୟକ

ମୁଦ୍ରଣ :

ଭାରତୀ ପ୍ରେସ, ସି. ଡ଼ି. ଏ., ସେକ୍ଟର-୭, କଟକ-୧୪

ମୂଲ୍ୟ : ଟ ୧୫-୦୦

# ଭିଏତ୍‌ନାମ

ଯେ ନ ଜାଣିଚ୍ଛି ନାଇଁ, ଯେଉଁ ଖ୍ରୀଷ୍ଟପୂ ଜାଣିଛି, ଭିଏତ୍‌ନାମ ନାଁଟି ସେ ଶୁଣିଲେ, ସୁଦୂର ଅତୀତକୁ ତାର ମନ,ଟା ଟାଣି ହୋଇଯାଏ ।

ଦ୍ୱିତୀୟ ଶତାବ୍ଦୀର କଥା । ସେତେବେଳକୁ କଳିଙ୍ଗ ସାମ୍ରାଜ୍ୟ ଉତ୍ତରରେ ଗଙ୍ଗାଠାରୁ ଦକ୍ଷିଣରେ ଗୋଦାବରୀ ପର୍ଯ୍ୟନ୍ତ ଲମ୍ବି-ଥିଲା । କଳିଙ୍ଗ ସାମ୍ରାଜ୍ୟର ଲୋକେ ଇଣ୍ଡୋନେସିଆରେ ବସତି ସ୍ଥାପନ କରିଥିବା ଜଣାପଡ଼େ । ପରେ ଖ୍ରୀଷ୍ଟପୂ ଭିଏତ୍‌ନାମର ଲୋହିତ ନଦୀ ଆଉ ମେକଙ୍ଗ ନଦୀ ମଝିରେ ଥିବା ଉର୍ବର ଅଞ୍ଚଳରେ ଗୋଟିଏ ରାଜ୍ୟ ସ୍ଥାପନ କଲେ । ତାର ନାଁଟି ସେମାନେ ରଖିଲେ ଚମ୍ପା । ତାର ପ୍ରଥମ ରାଜଧାନୀର ନାମ ଇନ୍ଦ୍ରପୁରୀ । ପରେ ସେମାନେ ଏହାକୁ ବିଜୟପୁରକୁ ଉଠାଇ ଆଣିଥିଲେ ।

ଚମ୍ପା ଥିଲା ଏକ ସମୃଦ୍ଧ ଏବଂ ପରାକ୍ରମୀ ଦେଶ । କୁବଲାଇ ଖାଁଙ୍କର ଆକ୍ରମଣରୁ ସେ ନିଜକୁ ବଞ୍ଚାଇ ରଖିପାରିଥିଲା । ସବୁ ସୌଭାଗ୍ୟ ଓ ଔଦ୍ଧତ୍ୟ ସବୁଦିନ ପାଇଁ ରହେନାହିଁ । ଚମ୍ପା ଦେଶର ମଧ୍ୟ ବିପର୍ଯ୍ୟୟ ଘଟିଥିଲା ।

୧୪୭୧ । ଏହାର ଉତ୍ତରରେ ଥିବା ଭିଏତ୍‌ନାମୀଙ୍କ ଆକ୍ରମଣରେ ଚମ୍ପା ଛାରଖାର ହୋଇଗଲା । ଚମ୍ପା ଆଉ ପୁନଃଗଠିତ ହୋଇ-ପାରିଲା ନାହିଁ । ଭିଏତ୍‌ନାମୀମାନେ ଏହାକୁ ଭିଏତ୍‌ନାମରେ ମିଶାଇଦେଲେ । ଚମ୍ପା ନାଁ ମଧ୍ୟ ଭୂପୃଷ୍ଠରୁ ଚିରଦିନ ଲୁପ୍ତ ହୋଇଗଲା ।

ଚମ୍ପାର ଲୋକମାନଙ୍କୁ ଚାମ୍ କୁହାଯାଉଥିଲା । ଏମାନେ ମଧ୍ୟ ଭିଏତ୍‌ନାମରେ ବାସ କରନ୍ତି । ଏଇ ଚାମ୍‌ରୁ ପରେ

ଭିଏତ୍‌ନାମର ବଶ୍ୟତା ସ୍ୱୀକାର ନକରି ଜଙ୍ଗଲକୁ ପଳାଇଗଲେ । ଏମାନେ ପାହାଡ଼ ଅଞ୍ଚଳରେ ଏବେବି ଅଛନ୍ତି । ସେମାନେ କୌପୀନ ବା ଲୁଗା ପିନ୍ଧନ୍ତି । ଗ୍ରୋଷ୍ଠ ଗ୍ରୋଷ୍ଠ ଗାଁରେ ରହନ୍ତି । ପିତୃପୁରୁଷଙ୍କ ପୂଜା ଏମାନେ କରନ୍ତି । ଜମିର ଉର୍ବରତା ବଢ଼ାଇବା ପାଇଁ ମଇଁଷି ବଳି ପକାନ୍ତି ।

ଆଜି ବି ଭିଏତ୍‌ନାମରେ ବହୁ ମନ୍ଦିର ଦେଖିବାକୁ ମିଳେ । ସେ ସବୁ ଚମ୍ପା ରାଜ୍ୟରେ ଭାରତୀୟମାନେ କରିଥିଲେ ।

ଭିଏତ୍‌ନାମର କଳା ବିଶେଷତଃ ନୃତ୍ୟକଳା ଏବେ ବି ଭାରତୀୟ ନୃତ୍ୟକଳାଦ୍ୱାରା ପ୍ରଭାବିତ ବୋଲି ଜଣାଯାଏ ।

ଭିଏତ୍‌ନାମ ଏସିଆ ମହାଦେଶର ଶେଷ ଭାଗରେ ଅବସ୍ଥିତ । ଉତ୍ତରରେ ଏହାର ଚୀନ, ପୂର୍ବରେ ଚୀନ ଉପସାଗର । ଦକ୍ଷିଣରେ ଶ୍ୟାମ ଉପସାଗର । ପଶ୍ଚିମରେ ଲାଓସ୍ ଆଉ କାମ୍ବୋଡ଼ିଆ, ଏହା ୮ ୩୩ ଡିଗ୍ରୀ ରୁ ୨୩.୩୨' ଡିଗ୍ରୀ ଉତ୍ତର ଅକ୍ଷାଂଶ ଓ ୧୦୨.୧୧ ଡିଗ୍ରୀରୁ ୧୦୯.୨୮ ଡିଗ୍ରୀ ପୂର୍ବ ଦ୍ରାଘିମା ସୀମାବଦ୍ଧ । ଏହାର ପୂର୍ବପଟଟା ସମତଳଭୂମି । ପଶ୍ଚିମପଟେ ଆନାମ ପର୍ବତମାଳା । ଏହାର ସାମଞ୍ଜସ୍ୟ ଭାରତର ତାମିଲନାଡ଼ୁ, ଆନ୍ଧ୍ର, ଓଡ଼ିଶା ଓ ପଶ୍ଚିମବଙ୍ଗଳାର ସମୁଦ୍ର ଉପକୂଳ ଅଞ୍ଚଳ ସହିତ ଅଛି । ଏମାନେ ଏକ ଅକ୍ଷାଂଶରେ ଅବସ୍ଥିତ । ଉଭୟଙ୍କର ଗୋଟିଏ ପଟେ ସମୁଦ୍ର, ଆରପଟେ ପର୍ବତମାଳା ଅଛି ।

ଭିଏତ୍‌ନାମ ଦେଖିବାକୁ ଇଂରାଜୀ ଅକ୍ଷର 'S" ପରି ଲମ୍ବ ହୋଇ ଦେଖଣଟିଏ । ଏହାର ଲମ୍ବ ୧୦୦୦ ମାଇଲ । ଉତ୍ତରପଟ ଓସାରିଆ । ସବୁଠୁ ବେଶି ଓସାରିଆ ଜାଗାର ଓସାର ହେବ ୩୩୦ ମାଇଲ । ମଝିଟା ସରୁ, ସବୁଠାରୁ ସରୁ ଜାଗାର ଓସାର ୩୩ ମାଇଲ ।

ଏହାର ଦୁଇଭାଗରୁ ତିନିଭାଗ ପାହାଡ଼ ଆଉ ମାଳଭୂମି । ଅବଶିଷ୍ଟ ଏକଭାଗ ସମତଳ । ଏହା ବ୍ରହ୍ମପୁତ୍ର ଆଉ ମେକଙ୍ଗ ନଦୀର ଅବବାହିକା । ବ୍ରହ୍ମପୁତ୍ର ଆଉ ମେକଙ୍ଗ ନଦୀରେ ଭାସି ଆସୁଥିବା ପଟୁରେ ଏହା ଗଠିତ । ବର୍ଷା ପ୍ରାୟ ୫୮" ରୁ ୧୧୬" (ଇଞ୍ଚ) ହୁଏ । ତେଣୁ ଏଠି ପ୍ରଧାନ ଫସଲ ଧାନ । ପ୍ରଚୁର ଫଳ ଫଳେ ।

ଏଠି ନଈ ନାଳ ବହୁତ । ସବୁଠି ମାଛ ହାଉଯାଉ । ଏମିତି କି ଧାନ ଜମିରେ ବି ମାଛ ବହୁତ ।

ପ୍ରାୟ ଦୁଇକୋଟି ଲୋକ ଏଠି ବାସ କରନ୍ତି । ଲୋକେ ଧାନ ଚାଷ କରନ୍ତି । ଘରେ ଘୋଡ଼ା ପାଳନ୍ତି, ମାଛ ଧରନ୍ତି ଆଉ ବାଉଁଶରେ ବିଭିନ୍ନ ପ୍ରକାର ଜିନିଷ ତିଆରି କରନ୍ତି । ଏବେ ସ୍ୱାଧୀନ ଭିଏତ୍‌ନାମ କଳ କାରଖାନା ବସାଇଲାଣି । ଧାନ, କୋଇଲା, ରବର ଏମାନେ ବାହାରକୁ ପଠାନ୍ତି । ପ୍ରାୟ ୮୦ ଲକ୍ଷ ଲୋକ ଜଙ୍ଗଲରେ ଥାଆନ୍ତି । ସେମାନେ ଏବେ ବି ଅସଭ୍ୟ ହୋଇ ରହିଛନ୍ତି । ସେମାନଙ୍କର ଭାଷା ଅଲଗା । ଭାଷାର ଲିପି ମଧ୍ୟ ଅଛି ।

ଅଧିକାଂଶ ଲୋକ କୋକ୍‌ନୁ ଭାଷାରେ କଥାବାର୍ତ୍ତା କରନ୍ତି । ଏଇ ଭାଷା ଚୀନା ଭାଷା ଦ୍ୱାରା ପରିପୁଷ୍ଟ । ଏଥିରେ ଭାରତୀୟ ଭାଷା ବି କିଛି କିଛି ମିଶିଛି । ଆଗରୁ ଚୀନା ଲିପି ବ୍ୟବହାର କରାଯାଉଥିଲା । ପାଦ୍ରୀଙ୍କ ପ୍ରଭାବରେ ସେମାନେ ରୋମାନ୍ ଲିପି ବ୍ୟବହାର କରନ୍ତି । ଏମାନଙ୍କର ସାହିତ୍ୟ ଚୀନ୍ ଦ୍ୱାରା ପ୍ରଭାବିତ । ବହୁବର୍ଷର ସଂସ୍କୃତି ଯୋଗୁଁ ଗଳ୍ପ ଓ କବିତା ଉଚ୍ଚ କୋଟୀର । ନୃତ୍ୟ-କଳାରେ ଭାରତୀୟ ନୃତ୍ୟର ଛାପ ଅଛି । ପ୍ରାୟ ଅଧିକାଂଶ ଲୋକ ତାଓ ଓ ଚୀନ ବୌଦ୍ଧଧର୍ମରେ ଦୀକ୍ଷିତ ।

ଏଠାରେ ପାହାଡ଼ ଅଞ୍ଚଳରେ ଜଙ୍ଗଲ ବେଶ୍ ଅଛି । ସେଠି ହରିଣ ଅରଣାମଇଁଷି, ବଣୁଆ ଗୋରୁ, ବାଘ, ହାତୀ ଅଜଗରସାପ ବହୁତ ଥାଆନ୍ତି ।

ତିନ ହଜାର ବର୍ଷ ଧରି ଏଠି ଲୋକମାନେ ରହି ଆସୁଛନ୍ତି । ଗୁମ୍ଫା ଖନନରୁ ବାହାରିଥିବା ବିଭିନ୍ନ ଜିନିଷରୁ ଏହା ପ୍ରମାଣିତ ହୋଇଛି । ଲୋକେ ନଦୀର ଉତ୍ତର ଭାଗରେ ପ୍ରଥମ ଜନବସତି ହୋଇଥିଲା । ଉତ୍ତରରୁ ଆସିଥିବା ଚୀନ ଓ ଦକ୍ଷିଣରୁ ଆସିଥିବା ଇଣ୍ଡୋନେସିଆ ଲୋକଙ୍କର ସମିଶ୍ରଣରେ ଭିଏତ୍‌ନାମୀମାନଙ୍କ ସୃଷ୍ଟି । ପ୍ରଥମେ ଏଇ ଅଞ୍ଚଳର ନାଁ ଥିଲା ଭ୍ୟାନ ଲ୍ୟଙ୍ଗ ।

ଖ୍ରୀ: ପୂ: ତୃତୀୟ ଶତାବ୍ଦୀରେ ଚୀନର ନାମ୍ ଭିଏତ ସହିତ ଏ ଅଞ୍ଚଳ ମିଶିଗଲା । ଖ୍ରୀ: ପ : ୧୧୧ରେ ଚୀନାମାନେ ନାମ୍ ଭିଏତ୍-ରାଜ୍ୟକୁ ଚୀନ ସାଥିରେ ମିଶାଇ ଦେଲେ । ଚୀନ ଶାସନ ବିରୁଦ୍ଧରେ ଅତିକମ୍‌ରେ ଦଶଟି ବଡ଼ ଧରଣର ବିଦ୍ରୋହ ଭିଏତ୍‌ନାମୀମାନେ କରିଛନ୍ତି । କିନ୍ତୁ ସବୁଥର ସେମାନେ ହାରିଯାଇଛନ୍ତି । ସ୍ୱାଧୀନ ହୋଇ ପାରିନାହାନ୍ତି । ଯାହାହେଉ ୯୩୯ ଖ୍ରୀଷ୍ଟାବ୍ଦରେ ସେମାନେ ସ୍ୱାଧୀନ ହେଲେ । ଧୀରେ ଆସ୍ତେ ସେମାନେ ବଳଶାଳୀ ହୋଇଉଠିଲେ । ୧୪୭୧ରେ ଆକ୍ରମଣ କରି ଚମ୍ପାକୁ ଧ୍ୱଂସ କରିଦେଲେ । ନିଜ ନିଜ ଭିତରେ କଳହ ଯୋଗୁ ୧୫୩୬ ଖ୍ରୀଷ୍ଟାବ୍ଦରେ ଭିଏତ୍‌ନାମ ଦୁଇଭାଗ ହୋଇଗଲା । ଉତ୍ତରଟିର ନାଁ ହେଲା 'ଟନ୍‌କିନ' ଦକ୍ଷିଣର ନାମ 'କୋଚୀନ ଚୀନ' । ଅଳ୍ପଦିନ ଭିତରେ ସେମାନଙ୍କର ପୁନର୍ମିଳନ ହୋଇ ପାରିଥିଲା । ତଥାପି ସପ୍ତଦଶ ଶତାବ୍ଦୀରେ ପୁଣି ଭାଗ ଭାଗ ହୋଇଗଲା । ଏହା ଦେଢ଼'ଶ ବର୍ଷ ରହିଥିଲା ।

ଷୋଡ଼ଶ ଶତାବ୍ଦୀ । ପ୍ରଥମଥର ପାଇଁ ପର୍ତ୍ତୁଗୀଜମାନେ ଏଠି ପହଞ୍ଚିଲେ । ପଛେ ପଛେ ଆସିଲେ ଫରାସୀମାନେ । ପାଦ୍ରୀମାନେ ଏଠି ପହଞ୍ଚି ଧର୍ମପ୍ରଚାରରେ ଲାଗିଗଲେ । ୧୮୮୩ରୁ-୧୮୮୬ ମଧ୍ୟରେ ଫରାସୀମାନେ ସମଗ୍ର ଭିଏତ୍‌ନାମକୁ ସେମାନଙ୍କ ଶାସନକୁ ନେଇ ଇଣ୍ଡୋଚୀନ ସାଥିରେ ମିଶାଇ ଦେଲେ । ୧୯୦୬ ଖ୍ରୀଷ୍ଟାବ୍ଦରେ ବିପ୍ଳବର ପୁଣି ଆରମ୍ଭ । ଫରାସୀମାନେ ବହୁବାର ବିପ୍ଳବକୁ

ଦମନକରି ତାଙ୍କର ଶାସନ ଦୃଢ଼ କରିଥିଲେ ।

୧୯୪୧ ରେ ଦ୍ୱିତୀୟ ମହାସମର । ଜାପାନ ଧମକରେ ଫରାସୀମାନେ ଜାପାନର ବଶ୍ୟତା ସ୍ୱୀକାର କଲେ । ୧୯୪୫ରେ ସ୍ୱଦେଶର ଲୋକମାନେ ଯୁଦ୍ଧରେ ଜିତିବାକୁ ଆରମ୍ଭ କଲେ । ବାଧ୍ୟ ଦେଖି ଜାପାନ ୧୯୪୫ରେ ଭିଏତ୍‌ନାମର ସ୍ୱାଧୀନ । ଘୋଷଣା କରିଦେଲା । କିନ୍ତୁ ହୋ ଚୀ ମିନ ଭିଏତ୍‌ନାମରେ ଗରିଲା ଯୁଦ୍ଧ ଆରମ୍ଭ କରି ଦେଇଥାଆନ୍ତି । ଯୁଦ୍ଧ ସରିଲାବେଳକୁ ହୋ ଚୀ ମିନ ଉତ୍ତର ଭିଏତ୍‌ନାମ ଦଖଲ କରିସାରିଥିଲେ । ଦକ୍ଷିଣ ଭିଏତ୍‌ନାମକୁ ଇଂରେଜମାନଙ୍କ ସାହାଯ୍ୟରେ ଫରାସୀ ଦଖଲ କଲା । ହେଲେ, ଜନମତ ପ୍ରବଳ ହେବାଯୋଗୁଁ ପୁଣି ଗୃହଯୁଦ୍ଧ ଲାଗିଗଲା । ୧୯୫୪ ଜେନେଭା ଚୁକ୍ତି ଅନୁସାରେ ଫରାସୀମାନେ ସେଠୁ ବିଦା ହୋଇଗଲେ ।

ଭିଏତ୍‌ନାମ କିନ୍ତୁ ଦୁଇଭାଗ ହେଲା । ୧୯୫୭ରେ ଭୋଟରେ ଏକତ୍ରୀକରଣର ପ୍ରସ୍ତାବ ହେଲା । କିନ୍ତୁ ଦକ୍ଷିଣ ସରକାରଙ୍କୁ ସାହାଯ୍ୟ କଲା ଯୁକ୍ତରାଷ୍ଟ୍ର ଆମେରିକା । କମ୍ୟୁନିଷ୍ଟମାନଙ୍କ ଗରିଲା ଆକ୍ରମଣ ଦକ୍ଷିଣରେ ଥିବା ସରକାର ବିରୁଦ୍ଧରେ ଚାଲିଲା । ତାକୁ ପ୍ରତିହତ ପାଇଁ ଯୁକ୍ତରାଷ୍ଟ୍ର ଅଜସ୍ର ଅର୍ଥ ଓ ଜୀବନ ନଷ୍ଟକଲା । ଗଣତନ୍ତ୍ର ସେଠି ବଜାୟ ରଖିବା ଆଳରେ । କିନ୍ତୁ ସବୁ ଫେଲ୍ ମାରିଲା ।

୧୯୭[illegible]ରେ ପୁଣି ଶାନ୍ତି ପ୍ରସ୍ତାବ ନେଇ ଲୋକମାନଙ୍କର ଭୋଟ ହେଲା । ୧୯୭୫ରେ ପୁଣି ଭିଏତ୍‌ନାମ ଏକାଠି ହେଲା । ଏହାର ପ୍ରସିଦ୍ଧ ବନ୍ଦର ସାଇଗନ, ହୋଇଫଙ୍ଗ ଓ ଟୁରାନ୍ସ । ଏଠାରେ ଛତ୍ତର ରେଳ ଲାଇନ୍ ମଧ୍ୟ ଅଛି ।

ବର୍ତ୍ତମାନ ଏହାର ରାଜଧାନୀ ସାଇଗନ । ବହୁ ଉତ୍ଥାନ ପତନ ପରେ ପ୍ରାଚ୍ୟର ଏ ଶ୍ରେଷ୍ଠ ଦେଶଟି ଉନ୍ନତି ପଥରେ ଆଗେଇବାକୁ ଆଜି ଦୃଢ଼ ପ୍ରତିଜ୍ଞ ।

●

# ସୂଚୀପତ୍ର

# ମାଛି ମଶା

ଅନେକ ଦିନ ତଳର କଥା । ଭିଏତ୍‌ନାମର ଗୋଟିଏ ଛୋଟ ଗାଁରେ ଗୋକ୍‌ତାମ୍ ଓ ତା ସ୍ତ୍ରୀ ନାମ୍‌ଦିପ୍ ରହୁଥିଲେ । ତାମ୍ ଧାନ ଚାଷ କରେ । ଘାପ୍ ଟସର ପୋକ ପାଳେ ସତ, ହେଲେ ସେଥିରେ ତାର ଜମା ଆଗ୍ରହ ନ ଥାଏ । ସେ କାମ କରିବାକୁ ଘୃଣା କରେ । ତା'ର ଇଚ୍ଛା—ସେ କେମିତି ବଡ ଲୋକ ହୁଅନ୍ତା, ବଡ଼ ଘରଟିଏ କରନ୍ତା, ବହୁତ ଚାକର ଚାକରାଣୀ ରଖନ୍ତା ଆଉ ସେ କିଛି କାମ ନ କରି ଅଳସରେ ରହନ୍ତା ।

ଦିନକର କଥା । ସେତେବେଳକୁ ତାମ୍ କ୍ଷେତରେ । ଘରେ ଘାପ୍ ଏକୁଟିଆ । ହଠାତ୍ ଘାପ୍ ଅସୁସ୍ଥ ହୋଇପଡିଲା । ଅଳ୍ପ ସମୟ ଭିତରେ ମରିବି ଗଲା । ଘରେ ତ ଆଉ କେହି ନ ଥିଲେ, ତାମ୍ ଖବର ପାଇପାରିଲା ନାହିଁ । ଦି'ପହରେ ତାମ୍ ଘରକୁ ଆସି ଦେଖେ ତ, ଘାପ୍ ମରିଯାଇଛି । ସେ ବହୁତ କାନ୍ଦିଲା । ଘାପ୍ ପାଇଁ ଭଗବାନଙ୍କୁ ପ୍ରାର୍ଥନା କଲା । ହଠାତ୍ ସେ ଗୋଟିଏ ସ୍ୱପ୍ନ ଦେଖିଲା । ସେ ଅନୁଭବ କଲା—ଘାପ୍‌ର ଶବଟିକୁ ସମୁଦ୍ର ଭିତରେ ଥିବା ମାୟା ପାହାଡ଼କୁ ନେଇଯିବାକୁ ସେ ଇସାରା ଦେଉଛି ।

ତାମ୍ ତ ଘାପ୍‌କୁ ଭଲପାଏ । ଘାପ୍‌କୁ ବଞ୍ଚାଇବାକୁ ତା'ର ଭାରି ଇଚ୍ଛା । କିନ୍ତୁ ଉପାୟ ତାର ଆଉ କିଛି ନଥିଲା । ସେଥିପାଇଁ ସ୍ୱପ୍ନର ଇସାରା ସେ ମାନିନେଲା । ତେଣୁ ସେ ଘାପ୍‌ର ଶବକୁ ଡଙ୍ଗାରେ ଧରି ମାୟା ପାହାଡ଼ ଆଡକୁ ବାହାରିଲା । ମାୟା ପାହାଡ଼ଟି ବହୁତ ଦୂର । ସେଠି ତାକୁ ଶୀଘ୍ର ପହଞ୍ଚିବାକୁ ହେବ । ଟିକିଏ ହେଳା ନ କରି ସେ ଭୁହାଇ ଭୁହାଇ ଆହୁଲା ମାରିଲା । ଶେଷରେ ସେ ମାୟା ପାହାଡ଼ରେ ପହଞ୍ଚିଲା । ସେତେବେଳକୁ ସେ

କ୍ଲାନ୍ତ ଆଉ ଅବସନ୍ନ ହେବାର କଥା । କିନ୍ତୁ ତାର ଉତ୍କଣ୍ଠା ବହୁତ । ଟୁଲ୍ପାର ଇଙ୍ଗିତରେ ସେ ସେଠାକୁ ଆସିଛି । ସେ ହାଲିଆ କି କ୍ଲାନ୍ତ କିଛି ବି ଜାଣିପାରୁ ନଥିଲା ।

ପାହାଡ଼ ପାଖରେ ପହଞ୍ଚି ସେ ଉପରକୁ ଅନାଇଲା । ସେ ଦେଖିଲା—ପାହାଡ଼ ଉପରେ ଗୋଟିଏ ଜାଗାରେ ବହୁତ ଫୁଲ ଫୁଟିଛି । ଫୁଲଗୁଡ଼ିକ ବହୁତ ସୁନ୍ଦର । ସେଇ ଜାଗାକୁ ଯିବ ବୋଲି ତାମ୍ ବାହାରିଲା । କାନ୍ଧରେ ଧାପ୍‌ର ଶବ । ପାହାଡ଼ଟି ଖାଡ଼ା । ଚଢ଼ିବା ଭାରି କଷ୍ଟ । ତଥାପି ଅତି କଷ୍ଟରେ ତାମ୍ ସେଠି ପହଞ୍ଚି-ଗଲା । ଫୁଲ ଗଛ ପାଖରେ ଧାପ୍‌ର ଶବକୁ ଶୁଆଇଦେଲା । ତା' ପାଖରେ ଆଣ୍ଠେଇକରି ଭଗବାନଙ୍କୁ ଅତି ବିକଳ ହୋଇ ଡାକିଲା । ସେଇତିକିବେଳେ ବୁଢ଼ାଟିଏ କୁଆଡୁ ଆସି ସେଠାରେ ପହଞ୍ଚିଗଲା । ତା'ର ବାଳସବୁ ଧଳା । ଚମ ଧୁଡୁଧୁଡୁ । କିନ୍ତୁ ତା ଆଖି ଦି'ଟା ମଶାଲ ପରି ଜଳୁଥାଏ । ସେ ତାମ୍‌କୁ ତା ଶିଷ୍ୟ ହୋଇ ସେଠାରେ ରହିବାକୁ କହିଲା । ତାମ୍ କିନ୍ତୁ ରାଜି ହେଲାନାହିଁ । ବରଂ କହିଲା—"ଧାପ୍‌କୁ ମୁଁ ଭାରି ଭଲପାଏ । ତା ବିନା ମୁଁ ବଞ୍ଚି ପାରିବି ନାହିଁ । ଦୟାକରି ଧାପ୍‌କୁ ଫେରେଇ ଆଣନ୍ତୁ ।" ସେଥିପାଇଁ ସେ ବୁଢ଼ାକୁ କାକୁତି ମିନତି ହୋଇ ବହୁତ ଗୁହାରି କଲା । ତା ପାଦ ପାଖରେ ମୁଣ୍ଡ ବି ବାଡ଼େଇଲା ।

କିଛି ସମୟ ପାଇଁ ବୁଢ଼ା ଚୁପ୍ ହୋଇଗଲା । ତାମ୍‌ର ମନେ ହେଲା, ବୁଢ଼ାଟି ଗଭୀର ଭାବରେ କ'ଣ ଚିନ୍ତାକରୁଛି । ତା ପରେ ବୁଢ଼ାଟି ତାମ୍‌କୁ ତାର ଆଙ୍ଗୁଠି ଟିକେ କାଟି ତିନି ଟୋପା ରକ୍ତ ଧାପ୍ ଉପରେ ପକାଇବାକୁ ଆଦେଶଦେଲା । ତା କଥା ଅନୁସାରେ ତାମ୍ ତା'ର ଆଙ୍ଗୁଠି କାଟି ଦେଲା । ସେଥିରୁ ବୋହୁଥିବା ରକ୍ତରୁ ତିନି ଟୋପା ଧାପ୍ ଦେହରେ ପକାଇଦେଲା । ଯେମିତି ସେ ରକ୍ତ

ପଡନ୍ତି ସେମିତି ଦୀପ ନଦରୁ ଉଠିଲାପରେ ଝାଡ଼ଝୁଡ଼ି ହୋଇ ବସିଲା । ନିଜକୁ ଗୋଟିଏ ପାହାଡ ଉପରେ ପୁଣି ସାମ୍ନାରେ ବୁଢ଼ାକୁ ଦେଖି ସେ ଆଶ୍ଚର୍ଯ୍ୟ ହୋଇଗଲା । କେମିତି ତାର ଶବ ମାପ୍ଳା ପାହାଡ଼କୁ ଅଣାହେଲା, ଆଉ କେମିତି ସେ ଜୀବନ ପାଇଲା ସେ ସବୁକଥା ବୁଢ଼ାଟି ତାକୁ ଠିକନଖି କରି ବୁଝାଇ ଦେଲା । ତା ପରେ ବୁଢା ତାକୁ ହୁସିଆର କରିଦେଲା—“ସେ ତାମ୍ ପାଖେ ହବୁଦିନ ରହିବ । ତା କଥା ମାନି ଚଳିବ । କଠିନ ପରିଶ୍ରମ ବି କରିବ । ଏସବୁ ନ କଲେ ଭଗବାନ ତାକୁ କଠୋର ଦଣ୍ଡ ଦେବେ ।” ବୁଢ଼ାଟି ତାପରେ କୁଆଡ଼େ ଚାଲିଗଲା ।

ଦୀପ୍ ବଞ୍ଚିଉଠିବାରୁ ତାମ୍ ବହୁତ ଖୁସି ହୋଇଗଲା । ଉଭୟେ ଆନନ୍ଦରେ ଘରକୁ ଡଙ୍ଗାରେ ବାହୁଡ଼ିଲେ । ସେମାନେ ତ କିଛି ଖାଇନଥିଲେ । ସେମାନଙ୍କୁ ଘରି ଭୋକ ହେଉଥିଲା । ବଜାରଟିଏ ଦେଖି ଡଙ୍ଗାକୁ ତାମ୍ କୂଳକୁ ଲଗାଇଦେଲା । ଡଙ୍ଗାରେ ଦୀପ୍କୁ ଛାଡି ଖାଦ୍ୟପାଇଁ ସେ ବଜାରକୁ ଚାଲିଗଲା ।

ଦୀପ୍ ଡଙ୍ଗାରେ ବସି ତାମ୍କୁ ଅପେକ୍ଷା କରିଥାଏ । ଏହି ସମୟରେ ସେଠାରେ ବଡ଼ ଡଙ୍ଗାଟିଏ ଆସି ଲାଗିଲା । ଡଙ୍ଗାଟି ଦେଖିବାକୁ ଭାରି ସୁନ୍ଦର । ତାର ମାଲିକ ଜଣେ ଧନୀ ବ୍ୟବସାୟୀ । ସେ ଡଙ୍ଗା ଭିତରେ ବସିଥିଲେ । ଦୀପ୍କୁ ଦେଖି ତାଙ୍କ ଡଙ୍ଗାକୁ ଡକେଇ ପଠେଇଲେ । ଏକୁଟିଆ ବସି ବସି ଦୀପ୍କୁ ଖରାପ ଲାଗୁଥିଲା । ସୁବିଧା ମିଳିବାରୁ ସେ ଆଉ ଡଙ୍ଗାକୁ ଚାଲିଗଲା । ତାକୁ ତ ଭୋକ କରୁଥିଲା । ଚା’ ଖାଇବାର ପ୍ରସ୍ତାବରେ ସେ ରାଜି ହୋଇ-ଗଲା । ଚା’ ଖାଇବାବେଳେ ଗପ ବି ବେଶ୍ ଜମିଲା । ବ୍ୟବସାୟୀଟି ଦୀପ୍ର ସୌନ୍ଦର୍ଯ୍ୟର ଭୂରିଭୂରି ପ୍ରଶଂସା କଲା । ଦୀପ୍ ତ ଫୁଲେଇ । ନିଜର ପ୍ରଶଂସା ଶୁଣି ମନେ ମନେ ସେ ବେଶ୍ ଗର୍ବ ଅନୁଭବକଲା ।

ବ୍ୟବସାୟୀଟି ଏହି ମଉକାରେ ତାଙ୍କ ସହିତ ବିବାହ ପାଇଁ ପ୍ରସ୍ତାବ ପକେଇଲା । ଗୋପ୍ ଦେଖିଲା—ବ୍ୟବସାୟୀଟି ବେଶ୍ ଧନୀ । ତାଙ୍କ ପାଖରେ ରହିଲେ ତାକୁ କାମ କରିବାକୁ ପଡ଼ିବ ନାହିଁ । ଆରାମରେ ରହିବ । ସେ ତ କାମ କରିବାକୁ ଘୃଣାକରେ । ମଉଜ ମଜଲିସ୍‌ରେ ରହିବାକୁ ଭଲପାଏ । ତେଣୁ ସେ ତାଙ୍କ କଥାରେ ରାଜି ହୋଇଗଲା । ତାମ୍ ବିଷୟରେ ପଦେ ବି କିଛି କହିଲା ନାହିଁ । ଗୋପ୍‌ର ଆଗ୍ରହ ଦେଖି ବ୍ୟବସାୟୀଟି ତାକୁ ତାଙ୍କ ଡଙ୍ଗାରେ ବସାଇ ନେଇଗଲା ।

ତାମ୍ ଜଳଖିଆ ଧରି ଆସି ଦେଖେ ତ, ଡଙ୍ଗାରେ ଗୋପ୍ ନାହିଁ । ଗୋପ୍‌କୁ ନ ଦେଖି ସେ ଭାରି ବ୍ୟସ୍ତ ହୋଇପଡ଼ିଲା । ଗୋପ୍‌ର ନାଁ ଧରି ଡ଼ାକି ଡ଼ାକି ଥକି ହିଗଲା । ଉତ୍ତର କିନ୍ତୁ କିଛି ମିଳିଲା ନାହିଁ । ଅଳ୍ପ ଦୂରରେ ବୁଢ଼ା ନାଉରୀଟି ସବୁ କଥା ଲକ୍ଷ୍ୟ କରୁଥିଲା । ତାମ୍‌ର ବ୍ୟସ୍ତତା ଦେଖି ତାର ଦୟା ହେଲା । ପାଖକୁ ଆସି ତାମ୍‌କୁ ସବୁକଥା କହିଲା । ବ୍ୟବସାୟୀର ଠିକଣାଟି ମଧ୍ୟ ବତେଇଦେଲା । ଏସବୁ ଶୁଣି ତାମ୍ ଭାରି ରାଗିଗଲା । ସେ ଘରକୁ ଫେରିଗଲା ।

ଅଳ୍ପଦିନ ଭିତରେ ସେ ବ୍ୟବସାୟୀଙ୍କ ଘରେ ଯାଇ ପହଞ୍ଚିଗଲା । ବ୍ୟବସାୟୀଙ୍କର ଏକ ବିରାଟ ଘର । ଆଗରେ ଫୁଲ ବଗିଚା । ଚାକର ଚାକରାଣୀ ବହୁତ । ଖବର ନଦେଲେ, ବ୍ୟବସାୟୀଙ୍କ ସାଥିରେ ଭେଟ ହୋଇପାରେ ନାହିଁ । ଚାକର ହାତରେ ଖବର ଦେଇ ତାମ୍ ବାହାରେ ବ୍ୟବସାୟୀଙ୍କୁ ଦେଖା କରିବାକୁ ଅପେକ୍ଷା କରିଥାଏ । ସେ ଦେଖିଲା, ଗୋପ୍ ବଗିଚାରେ ଫୁଲ ତୋଳୁଛି । ତାମ୍ ଗୋପ୍ ପାଖକୁ ଗଲା । ହଠାତ୍ ତାମ୍‌କୁ ଦେଖି ଗୋପ୍

ଆଶ୍ଚର୍ଯ୍ୟ ହୋଇଗଲା । ଉତ୍ତର ବ ଗଲା । ଦୀପ୍ କହିଲା, ସେ ସେଠି ମନ୍ଦାରେ ଅଛି, ତେଣୁ ତାମ୍ ପାଙ୍ଗରେ ଆଉ ଯାଇପାରିବ ନାହିଁ ।

ତାମ୍ ତ ଦୀପ୍‌କୁ ଦେଖି ରାଗି ଯାଇଥିଲା । କିନ୍ତୁ ଟିକଏ ହେଲେ ସେ ତା'କୁ ବିରକ୍ତିଭାବ ଦେଖାଇଲା ନାହିଁ । ବରଂ କହିଲା ଯେ ଦୀପ୍‌କୁ ନେବାକୁ ସେ ଆସିନାହିଁ । ଦୀପ୍ ତ ଏଠି ରହିଛି, ତା ସାଙ୍ଗରେ ତାର ଆଉ ସମ୍ପର୍କ ରହିବ ନାହିଁ । ତେଣୁ ତାକୁ ବଞ୍ଚାଇବା ପାଇଁ ସେ ଯେଉଁ ତିନି ଟୋପା ରକ୍ତ ଦେଇଛି, ଦୀପ୍ ତାକୁ ଫେରାଇଦେବା ଉଚିତ୍ ହେବ । ସେଇ ତିନିଟୋପା ରକ୍ତ ଫେରାଇ ନେବାକୁ ସେ ଆସିଛି । ଦୀପ୍ ତା କଥାଶୁଣି ଆଶ୍ୱସ୍ତ ହେଲା । ତିନି ଟୋପା ରକ୍ତ ଦେଇ ଦେଲେ ତାକୁ ଆଉ ଯିବାକୁ ପଡ଼ିବ ନାହିଁ । ତେଣୁ ସେ ରକ୍ତ ଦେବାକୁ ଖାଲି ତ ରାଜି ହେଲା ନାହିଁ—ସଙ୍ଗେ ସଙ୍ଗେ ଦେଇ ଦେଲେ ନିସ୍ତୃତି ପାଇଯିବ ବୋଲି ଭାବିଲା । ସେଥିପାଇଁ, ହାତରେ ଧରିଥିବା ଫୁଲତୋଳା ଛୁରୀରେ ଆଙ୍ଗୁଠିରୁ ଟିକେ ଚେ କାଟି ଦେଇ ତାମ୍‌କୁ ହାତ ଦେଖାଇବାକୁ କହିଲା । ତାମ୍ ହାତ ଦେଖାଇଥାଏ । ଦୀପ୍‌ର ରକ୍ତ ତା' ହାତରେ ଟୋପା ଟୋପା ହୋଇ ଦୁଇ ଟୋପା ପଡ଼ିଲା । ଯେମିତି ତୃତୀୟ ଟୋପା ରକ୍ତ ତାମ୍ ହାତରେ ପଡ଼ିଛି, ଦୀପ୍‌ର ସୌନ୍ଦର୍ଯ୍ୟ କୁ ଆଉ ଉଭେଇଗଲା । ସେ ଆସ୍ତେ ଆସ୍ତେ ଶୁଖିଗଲା । ଶେଷରେ ସେ ଗୋଟିଏ ମଶା ହୋଇ ତାମ୍‌ର ମୁଣ୍ଡ ପାଖରେ ଗୁଣୁଗୁଣୁ ହୋଇ ବୁଲିଲା ତା ଶବ୍ଦରୁ ଜଣାଯାଉଥିଲା ସତେ ଯେମିତି ସେ ବାରମ୍ବାର କହୁଛି "ମୁଁ ଭୁଲ୍ କଲି, ମୁଁ ଭୁଲ୍ କଲି । ମୋ ରକ୍ତ ମୋତେ ଫେରାଇ ଦିଅ ।"

ତାମ୍ ସେଠାରେ ଆଉ ମୁହୂର୍ତ୍ତେ ବି ଅପେକ୍ଷା କଲାନାହିଁ । ଦୌଡ଼ି ଦୌଡ଼ି ଡଙ୍ଗା ନିକଟକୁ ଚାଲି ଆସିଲା । ଆହୁଲା ମାରି ମାରି

ସେ ମାୟା ପାହାଡ଼ ପାଖକୁ ଫେରି ଆସିଲା । ବୁଢ଼ାଟିକୁ ପୁଣି ସେ ସେଠି ଭେଟିଲା । ତାର ଶିଷ୍ୟତ୍ୱ ଗ୍ରହଣ କଲା । ପାପ୍‌ର କଥା ସବୁ ଶୁଣିସାରି ବୁଢ଼ାଟି କହିଲା—"ଭବିଷ୍ୟତରେ ଯେତେ ମାଛିମଶା ଜନ୍ମ ହେବେ, ସେମାନେ ସମସ୍ତେ ପାପ୍‌ର ସେଇ ଭିଜନଫୋପା ରକ୍ତ ଖୋଜି ବୁଲିବେ ।"

ଲୋକଙ୍କୁ ଭଲ ବ୍ୟବହାର ଦେଖାଇବା ଓ ଉପକାରୀ ଲୋକଙ୍କୁ ନ ଠକିବା ପାଇଁ ଏହା ଏକ ଚେତାବନୀ । ଏସବୁ ଯେ ନକରେ, ସେ ପାପ ପରି ଦୁଃଖପାଏ । ଏବେ ବି ଏହା ଭିଏତ୍‌ନାମ ଲୋକଙ୍କର ବିଶ୍ୱାସ ।

— o —

## ଛଅ

ପୃଥିବୀର ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଚୀନର ବିଶାଳ ପ୍ରାଚୀର ଅନ୍ୟତମ । ବହୁଦିନ ପୂର୍ବେ ଏଇ ପ୍ରାଚୀର ନିର୍ମାଣ ହୋଇଥିଲା । ସେତେବେଳେ ଭିଏତ୍‌ନାମରେ କେତେଗୁଡ଼ିଏ ଛୋଟ ଛୋଟ ରାଜ୍ୟ ଥିଲା । ସେଥିରୁ ଗୋଟିକରେ ଜାନ୍‌ଥି ହୋୟାଂ ରାଜା ଥାଆନ୍ତି । ସେ ତ ଘୋର ଅତ୍ୟାଚାରୀ, ତାଛଡ଼ା ପ୍ରଜାମାନଙ୍କ ଉପରେ ବହୁ ପ୍ରକାର କର ବି ଲଦି ଦେଇଥିଲେ । ଲୋକମାନେ ତାଙ୍କୁ ଖୁବ୍ ଡରନ୍ତି । କେହି ତାଙ୍କ ଅତ୍ୟାଚାରର ବିଷୟରେ ପଦେ ବି କହନ୍ତି ନାହିଁ ।

ଶିକ୍ଷିତ ବ୍ୟକ୍ତି, ବିଶେଷତଃ ଶିକ୍ଷକମାନଙ୍କ ପକ୍ଷେ କୌଣସି ଅତ୍ୟାଚାର ସହିବା କଷ୍ଟ । ସେମାନେ ସବୁବେଳେ ଅତ୍ୟାଚାର

ବିରୁଦ୍ଧରେ ଆନ୍ଦୋଳନ କରନ୍ତି । ସେଥିପାଇଁ ଶିକ୍ଷିତ ଲୋକଙ୍କୁ ରାଜା ହୋପୁଂ ଜମା ଭଲ ପାଉନଥିଲେ । ଶିକ୍ଷକମାନଙ୍କ ଉପରେ ତାଙ୍କର ଖୁବ୍ ରାଗ । ଟିକିଏ ଅଭିଯୋଗ ଶିକ୍ଷକମାନଙ୍କ ବିରୁଦ୍ଧରେ ପାଇଲେ ସେ ଅଭିଯୁକ୍ତ ଶିକ୍ଷକଙ୍କୁ ବନ୍ଦୀ କରୁଥିଲେ । କେତେକଙ୍କୁ ମଧ୍ୟ ପ୍ରାଚୀର ନିର୍ମାଣ କାର୍ଯ୍ୟରେ ଲଗାଇବା ପାଇଁ ଚୀନ୍ ପଠାଇ ଦେଉଥିଲେ ।

ସେତେବେଳେ ହୋପୁଂଙ୍କ ରାଜ୍ୟରେ ଜଣେ ଯୁବକ ଶିକ୍ଷକ ଥାଏ । ତା ନାଁ ଗୁନ । ତା ନିଜ ଗାଁର ଝିଅଟିକୁ ସେ ବାହା ହୋଇଥିଲା । ତା ନାଁ ଲୀ । ବାହାଘର ପରେ ସେମାନେ ସେଇ ଗାଁରେ ରହୁଥିଲେ । ଲୀ ମା ହେବାକୁ ଯାଉଥାଏ । ହଠାତ୍ ଦିନେ ଗୁନ୍‌କୁ ହୋପୁଂଙ୍କ ଲୋକମାନେ ଧରି ନେଇ ଜେଲ୍‌ରେ ପୁରାଇ-ଦେଲେ । ମାସକପରେ ଲୀର ପୁଅଟିଏ ହେଲା । ଗୁନ୍ ତ ଆଗରୁ ନାଁ ବାଛିଥିଲା । ତେଣୁ ଲୀ ପୁଅର ନାଁ ଦେଲା ଚୀନ ! ଗୁନ୍ ପୁଅକୁ ଦେଖିପାରୁ ନଥିବାରୁ ଲୀର ଭାରି ଦୁଃଖହୁଏ । ଆଶାରେ ମଣିଷ ବଞ୍ଚେ । ଦିନେ ନା ଦିନେ ଗୁନ୍ ତା ପାଖକୁ ଫେରିଆସିବ ବୋଲି ଲୀର ଦୃଢ଼ବିଶ୍ୱାସଥାଏ ।

କ୍ରମେ କ୍ରମେ ଚୀନ୍ ବଡ଼ ହେବାକୁ ଲାଗିଲା । କଥା କହି ଶିଖିଲା । ଅକ୍ଷର ଶିଖି ପାଠ ପଢ଼ିଲା । ଲୀ ଗୁନ୍ ବହିରୁ ପୁଅକୁ ପାଠ ପଢ଼ାଏ । ସବୁବେଳେ ତାକୁ ତା ବାପା କଥା କହେ । ତା ବାପା ବିଦେଶରେ କାମ କରନ୍ତି ଓ ଅଳ୍ପ ଦିନ ଭିତରେ ଫେରି ଆସିବେ ବୋଲି ପ୍ରବୋଧ ମଧ୍ୟ ଦିଏ । ସବୁଦିନ ରାତିରେ ଶୋଇବାକୁ ଗଲାବେଳେ ମା ପୁଅ ଦୁହେଁ, ଗୁନ୍ ଶୀଘ୍ର ଫେରି ଆସିବାପାଇଁ ପ୍ରାର୍ଥନା କରନ୍ତି । ପୁଅ ଶୋଇପଡ଼ିଲେ ଲୀ ଦୀପଟି ନେଇ ଝରକା ପାଖକୁ ଯାଏ । ଯେଠି ଝୁଲ ଚୌକିରେ

ବସି ଚୀନ୍‌କୁ ଅପେକ୍ଷା କରେ । ରାତିଟି ପାହିଯାଏ । ସବୁ ରାତି ଲୀର ଏମିତି ଭାବରେ କଟେ ।

ଏହା ଭିତରେ ଚୀନ୍‌କୁ ଗୁରିବର୍ଷ ହୋଇଗଲାଣି । ସେ ଦିନଟିଏ ରାତିର କଥା । ବାହାରେ ପ୍ରବଳ ଝଡ଼ି । ଘଡ଼ଘଡ଼ିରେ ଚୀନ୍‌ର ନିଦ ଭାଙ୍ଗିଗଲା । ସେ ଭୟରେ ଚିତ୍କାର କଲା । ଲୀ ଲ୍ୟମ୍ପଟି ଗୋଟିଏ ଟୁଲ୍ ଉପରେ ରଖି ଚୀନ୍‌ର ଖଟପାଖକୁ ଗଲା । ତା ପାଖକୁ ଗଲାବେଳେ ଲୀର ଛାଇଟା କାନ୍ଥରେ ପଡ଼ିଲା । ଚୀନ୍ ଛାଇକୁ ଦେଖି ଡ଼ରିଗଲା ।

ସେ ପଚାରିଲା "ମା ଏଇଟା କ'ଣ ?" ଲୀ କହିଲା—'ତୋ ବାପାର ଛାଇ ।" ଚୀନ୍ କ'ଣ ଭାବିଲା କେଜାଣି, ସାଙ୍ଗେ ସାଙ୍ଗେ ଆଣ୍ଠୁଇପଡ଼ି ହାତଯୋଡ଼ି ମୁଣ୍ଡ ନୁଆଁଇ କହିଲା—"ବାପା ! ମୁଁ ଶୋଇବାକୁ ଯାଉଛି ।" ସେଇଦିନଠୁଁ ପ୍ରତିଦିନ ରାତିରେ ଶୋଇବାକୁ ଯିବା ପୂର୍ବରୁ ଚୀନ୍ ଆଣ୍ଠୁମାଡ଼ି ବସି ହାତଯୋଡ଼ି ମୁଣ୍ଡ ନୁଆଁଇ କହେ—"ବାପା, ମୁଁ ଶୋଇବାକୁ ଯାଉଛି ।"

କିଛିଦିନ ପରର କଥା । ରାତି ବେଶୀ ହୋଇନଥାଏ । ଗାଁ ମୁଖିଆମାନେ ମନ୍ଦିରରେ ବସି ଲୀକୁ ଡକେଇ ପଠେଇଲେ । ଗାଁ ମୁଖିଆଙ୍କ କଥା ତ ଭାଙ୍ଗି ହେବ ନାହିଁ । ତାଛଡ଼ା ଜହାଜ ଜରୁରୀ । କାମ ନ ଥିଲେ ସେମାନେ ଡକାନ୍ତି ନାହିଁ । ତେଣୁ ତାକୁ ନିଶ୍ଚୟ ଯିବାକୁ ପଡ଼ିବ । ସେଥିପାଇଁ ସେ ଘରେ ତାଲା ଦେଇ ମନ୍ଦିରକୁ ବାହାରିଲା । ଏତିକିବେଳେ ଅଚିହ୍ନା ଭାବେ ଚୁନ୍ ଧଇଁସଇଁ ହୋଇ ପହଞ୍ଚି କହିଲା—"ପାଟି ନ କରି ଚୁପ୍‌ଚାପ୍ ଘରେ ଲୁଚିଯାଅ । ପୁଅ ଘରେ ଶୋଇଛି । ତାକୁ ଉଠାଇବ ନାହିଁ । ମୁଁ ସାଙ୍ଗେ ସାଙ୍ଗେ ଆସୁଛି ।" ଏହା କହି ଶୀଘ୍ର ବାହାରିଗଲା ।

ଅଳ୍ପ ସମୟ ପରେ ହଠାତ୍ ଚୀନ୍‌ର ନିଦ ଭାଙ୍ଗିଗଲା । ସେ ଉଠି କାନ୍ଦିଲା । ଗୁନ୍ କବାଟ ପାଖକୁ ଯାଇ ଆସ୍ତେ ଆସ୍ତେ କହିଲା "ସୁଅ ଡ଼ର ନାହିଁ । ମୁଁ ତୋ ବାପା ଆସିଛି ।" କାନ୍ଦି କାନ୍ଦି ଚୀନ୍ କହିଲା, "ନାଁ । ନାଁ । ! ତମେ ମୋ ବାପା ନୁହଁ । ମୋ ବାପା ବିଦେଶରେ ଥାଆନ୍ତି । ସବୁଦିନ ରାତିରେ ମୁଁ ଶୋଇବାକୁ ଗଲାବେଳେ ସେ ଆସନ୍ତି । ତମେ ଚାଲିଯାଅ ।" ଏହା କହି ସେ ମୁଣି ଶୋଇ ପଡ଼ିଲା ।

ଗୁନ୍ ମହା ଅଡୁଆରେ ପଡ଼ିଗଲା । କିଛି ବୁଝିପାରିଲା ନାହିଁ । ଲୀ କୁଆଡ଼େ ଗଲା, କିଛି ନ କହି ତରତର ହୋଇ ଚାଲିଗଲା । ସୁଅବି କହୁଛି, ବାପା ତାର ପ୍ରତିଦିନ ସେ ଶୋଇଲାବେଳେ ଆସେ । ତାହାହେଲେ, ଆଉ ଜଣେ ପୁରୁଷ ତା ଘରକୁ ପ୍ରତିଦିନ ଆସୁଛି । ଲୀ ତାକୁ ତାହାହେଲେ ଆଉ ଭଲ ପାଉନାହିଁ । ବୋଧହୁଏ ଆଉଥରେ ସେ ବାହା ହୋଇଛି । ଏକଥା ଭାବି ସେ ଖୁବ୍ ରାଗିଗଲା । ସେଠାରେ ମୁହୂର୍ତ୍ତେ ରହିବାକୁ ତାର ଆଉ ଆଗ୍ରହ ନଥିଲା । ସାଙ୍ଗେ ସାଙ୍ଗେ ଚାଲିଯିବା ପାଇଁ ସେ ବାହାରିଲା । ଲୀ ଠିକ୍ ସେହି ସମୟରେ ଆସି ପହଞ୍ଚିଗଲା । ପୁଲିସ ସହରକୁ ଆସି ତାକୁ ଖୋଜୁଥିବାର ଖବର ଦେଲା । ଲୀ ଦେଖିଲା ଯେ ଗୁନ୍ ରାଗରେ ତମତମ ହେଉଛି । କାରଣ ଜାଣିବାକୁ ଲୀ ତାଙ୍କୁ ପଚାରିଲା । ଗୁନ୍ କହିଲା "ତାକୁ ସେ ସନ୍ଦେହ କରୁଛି ।" କାହିଁକି ସନ୍ଦେହ କରୁଛି, ତା ବି କହିଲା । ଉତ୍ତରକୁ ଅପେକ୍ଷା ନକରି ସାଙ୍ଗେ ସାଙ୍ଗେ ଦୌଡ଼ି ସେ ବାହାରକୁ ଚାଲିଗଲା ।

ଲୀ ସବୁ କଥା ବୁଝିପାରିଲା । ଗୁନ୍‌ର ଦୁଃଖ ମଧ୍ୟ ସେ ନିଜେ ଅନୁଭବ କଲା । ସେ ବହୁତ କାନ୍ଦିଲା । ବାହାରକୁ ଆସି ଗୁନ୍‌କୁ

କେତେ ଖୋଜିଲା । ପାଇଲା ନାହିଁ । ସେତେବେଳକୁ ଗୁନ୍ ବହୁତ ଦୂର ପଳେଇ ଯାଇଥିଲା । ଅତ୍ୟନ୍ତ ଦୁଃଖରେ ସିଏ ନଈକୂଳକୁ ଗଲା । ତାର ବଞ୍ଚିବାର ଆଗ୍ରହ ମରିଗଲା । ସେଠି ଉଚ ପଥରଟିଏ ଉପରୁ ସେ ନଈକୁ ଡେଇଁ ପଡ଼ିଲା ।

ଚୀନ୍‌ର ତ ଆଉ କେହି ନଥିଲେ । ପଡ଼ୋଶୀମାନେ ତାକୁ ନେଇ ପାଖରେ ରଖିଲେ ।

ଶିକ୍ଷକ ଗୋଷ୍ଠୀକୁ କ୍ଷମା ଦିଆଯାଇ ମୁକ୍ତ କରାଗଲା ବୋଲି ଚଉଦିନ ରଜାଙ୍କର ଘୋଷଣା ପ୍ରକାଶ ପାଇଲା । ଗୁନ୍ ଲୁଚିଥିବା ସ୍ଥାନରେ ଏହି ଖବର ପାଇଲା । ସେ ଖୁସି ହୋଇ ସାଙ୍ଗେ ସାଙ୍ଗେ ଘରକୁ ଦୌଡ଼ିଲା । ସଂଧ୍ୟାବେଳେ ଘରେ ପହଞ୍ଚି ଦେଖେତ – ସିଏ ନାହିଁ । ପଡ଼ୋଶୀମାନଙ୍କ ଠାରୁ ଉଦ୍‌ବେଗ ଆତ୍ମହତ୍ୟାର ଘଟଣା ଶୁଣି ସେ ସ୍ତମ୍ଭୀଭୂତ ହୋଇଗଲା । ଚୀନ୍‌କୁ ପଡ଼ୋଶୀ-ମାନଙ୍କ ପାଖରୁ ନେଇ ଆସିଲା ।

ସେତେବେଳକୁ ଚୀନ୍‌ର ଶୋଇବା ବେଳ । ଚାରିଆଡ଼ ଅନ୍ଧାର । ଗୁନ୍ ଲ୍ୟାମ୍ପଟିକୁ ଲଗାଇ ଘର ଟେବୁଲ ଉପରେ ଥୋଇଦେଲା । ଦୁଆର କଣ ଆସିବାବେଳେ, ତା ଛାଇ କାନ୍ଥରେ ପଡ଼ିଲା । ଚୀନ୍ ସାଙ୍ଗେ ସାଙ୍ଗେ ଆଣ୍ଠେଇ ପଡ଼ି ହାତଯୋଡ଼ି ମୁଣ୍ଡ ନୁଆଁଇ ଛାଇକୁ କହିଲା "ବାପା, ମୁଁ ଶୋଇବାକୁ ଯାଉଛି ।" ଗୁନ୍ ସବୁ ଦେଖୁ-ଥାଏ । ପ୍ରକୃତ ସତକଥା ଜାଣିବାକୁ ତାର ଆଉ ବାକି ରହିଲା ନାହିଁ ।

ଗୁନ୍ ଦୁଃଖରେ ଭାଙ୍ଗିପଡ଼ିଲା । ଯେଉଁ ପଥର ଉପରୁ ସିଏ ଡେଇଁପଡ଼ି ଆତ୍ମହତ୍ୟା କରିଥିଲା, ସେ ସେଠି ଗୋଟିଏ ବେଦୀ

ତିଆରି କଲା । ପ୍ରତି ସଂଧ୍ୟାରେ ସେ ଚୀନ୍‌କୁ ସାଂଗରେ ନେଇ ସେଠାକୁ ଯାଏ । ସେଇଠି ସେମାନେ ବସି ଲି କୁ ମନେ ପକାନ୍ତି ।

ନ ବୁଝି ନ ଶୁଝି ସନ୍ଦେହରେ ମାରିଲେ, କଣ ବିଷମୟ ଫଳ ଫଳେ, ତାହା ଚୀନ୍ ଜୀବନରୁ ଶିଖିବାର କଥା ।



# ବାଲି କଙ୍କଡ଼ା

ବହୁବର୍ଷ ତଳେ ଗୋଟିଏ ଶିକାରୀ ଥିଲା ନାଁ ଡାଃଟ୍ୟାଂଗ । ପ୍ରତିଦିନ ବଡ଼ ଭୋରରୁ ସେ ଉଠେ । ଧନୁଶରଟି କାଂଧରେ ପକାଇ ବଣକୁ ବାହାରିଯାଏ । ଦିନ ସାରା ଶିକାର କରେ । ମୁହଁ ସଞ୍ଜ-ବେଳକୁ ଘରକୁ ଫେରେ । ଡାଂଟ୍ୟାଂଗର ଯିବା ବାଟରେ ଗୋଟିଏ ଭଂଗା ମନ୍ଦିର ପଡ଼େ । ସେଠାରେ ଦୁଇଟି ଚିତା ସାପ ରହନ୍ତି । ପ୍ରଥମେ ପ୍ରଥମେ ଡାଂଟ୍ୟାଂଗ ତାଙ୍କୁ ଦେଖି ଡର ଯାଉଥିଲା । କିନ୍ତୁ ସେମାନେ ତା ଆଡ଼କୁ ଟିକିଏ ବି ଅନାନ୍ତି ନାହିଁ ବୋଲି ସେ ଜାଣି ପାରିଲା । ଡର ତାର ଆସ୍ତେ ଆସ୍ତେ ଉଭେଇଗଲା । ସବୁବେଳେ ସାପମାନଙ୍କୁ ଦେଖି ଦେଖି ତାର ଦୟା ହେଲା । ସେଥିପାଇଁ, ଫେରିବା ବାଟରେ ସେ ସେମାନଙ୍କୁ କିଛି ମାଂସ ଖାଇବାକୁ ଦିଏ । ସେମାନେ ବି ମାଂସ ଖାଇବାରେ ଅଭ୍ୟସ୍ତ ହୋଇଗଲେ । ତା

ବାଟକୁ ଚାହିଁ ରହିଲେ । ତାପରେ ସେମାନଙ୍କ ସହିତ ତାର ବନ୍ଧୁତା ହୋଇଗଲା ।

ଦିନକର କଥା । ସେ ମନ୍ଦିର ପାଖ ଦେଇ ଗଲାବେଳେ ଗୋଟିଏ ଶବ୍ଦ ଶୁଣି ପାରିଲା । ସେ ସଙ୍ଗେ ସଙ୍ଗେ ଶବ୍ଦ ଆସୁଥିବା ଜାଗାକୁ ଧାଇଁଗଲା । ସେଠି ଦେଖିଲା ଗୋଟିଏ ଲମ୍ବା ହଳଦିଆ ସାପ ତା'ର ବନ୍ଧୁ ସାପ ଦୁଇଟିକୁ ଆକ୍ରମଣ କରୁଛି । ସେ ତ ଶିକାରୀ । ହଠାତ୍ ଶର ଛାଡ଼ି ସେ ଲମ୍ବା ସାପଟିକୁ ମାରିଦେଲା । କିନ୍ତୁ ତାର ଶର ଆଘାତରେ ଛୋଟ ସାପରୁ ଗୋଟିଏ ମଧ୍ୟ ମରିଗଲା । ତାଙ୍କ ମନରେ ଭାରି ଦୁଃଖ ହେଲା । ଗାତ ଖୋଳି ସେ ମଲା ଛୋଟ ସାପକୁ ପୋତି ଦେଲା ।

ସେଇ ରାତିରେ ତାକୁ ଭଲ ନିଦ ହେଲାନାହିଁ । ସେ ଡେରିରେ ଶୋଇଲା । କାହାର କଅଁଳିଆ ସ୍ୱରରେ ତା'ର ନିଦ ଭାଙ୍ଗିଗଲା । ସେ ଧଡ଼ପଡ଼ ହୋଇ ଉଠିପଡ଼ି ଦେଖିଲା ଛୋଟ ସାପଟି ତା ବିଛଣା ପାଖରେ ଠିଆ ହୋଇ କହୁଛି 'ଡରନାହିଁ ମୁଁ ତୋ ବନ୍ଧୁ । ତୁ ଆଜି ଭାରି ଭଲ କାମଟିଏ କଲୁ । ସେଥିପାଇଁ ମୁଁ ତୋତେ ପୁରସ୍କାର ଦେବାକୁ ଚାହୁଁଛି ।" ଏହା କହି ସାପ ତାଙ୍କ ହାତରେ ଗୋଟିଏ ଜିନିଷ ଦେଇ ଚାଲିଗଲା । ତାଙ୍କ ପରୀକ୍ଷା କରି ତାହା ଗୋଟିଏ ଉଜ୍ଜ୍ୱଳ ମଣି ବୋଲି ଜାଣିଲା । ପାଟିରେ ମଣିଟିଏ ରଖିଲେ ଯେକୌଣସି ଜୀବନ୍ତ ପ୍ରାଣୀ ସାଙ୍ଗେ କଥାବାର୍ତ୍ତା କରି ହେବ ବୋଲି ସେ ଜାଣିଥିଲା । ସେ ମଣିଟି ପାଇ ଖୁସି ହେଲା । ତାର ସଦବ୍ୟବହାର କରିବ ବୋଲି ଭାବିଲା ।

ତା' ପରଦିନ ତାଙ୍କ ଘରେରୁ ଉଠି ଜଙ୍ଗଲକୁ ବାହାରିଲା । ମଣିଟିକୁ ସେ ତା ପାଟିରେ ଜାକିଥାଏ । ବାଟରେ ଯାଉଁଯାଉଁ ଗୋଟିଏ

କାଉ ଉଚ ଡ଼ାଳରେ ବସିଥିବାର ସେ ଦେଖିଲ । ପାଖରେ କୌଣସି ଶିକାର ଅଛି କି ନାହିଁ ଜାଣିବାକୁ ସେ କାଉକୁ ପଚାରିଲ । ଦୁଇଶହ ଫୁଟ ତ଼ାହାଣରେ ଗୋଟିଏ ହରିଣ ଅଛି ବୋଲି କାଉଟି ଖବର ଦେଲ । ତାଂଟ୍ରାଙ୍ଗ ସଙ୍ଗେ ସଂଗେ ସେଠାକୁ ଗଲା । ହରିଣଟିକୁ ମାରି କରି ଆଣିଲ । ସେ କାଉକୁ କିଛି ମାଂସ ମଧ ଦେଲ । ସେଇ ଦିନଠାରୁ ସେ କାଉକୁ ସାଥୀକଲ । ତା ପରଠୁ ତାଂଟ୍ରାଂଗକୁ ବୁଲିକରି ଆଉ ଶିକାର ଖୋଜିବାକୁ ପଡ଼ିଲ ନାହିଁ । କାଉ ଉଚ ଡ଼ାଳରେ ବସି ଶିକାରର ସଂଧାନ କରେ । କାଉଠାରୁ ଖବର ପାଇ ତ଼ାଂଟ୍ରାଂଗ ସେଠାକୁ ଯାଇ ଶିକାର କରେ ।

ଦିନେ କାଉର ଆସିବାରେ ଡେ଼ରି ହେଲ । ତାଂଟ୍ରାଂଗ କାଉକୁ ଅପେକ୍ଷା ନକରି ଶିକାରକୁ ବାହାରି ପଡ଼ିଲ । ଯାହା ଶିକାର ମିଳିଲ, ସେଥିରୁ କାଉ ପାଇଁ କିଛି ମାଂସ ତା'ର ବସା ବାଂଧା ଗଛ ପାଖରେ ରଖିଦେଇ ଚାଲିଗଲ । ଗୋଟିଏ ହେଟା ଆସି ସେ ମାଂସତକ ଖାଇଦେଲ । କାଉ ପରେ ଆସି ଦେଖିଲ, ତାପାଇଁ ତ଼ାଂଟ୍ରାଂଗ ଖାଇବାକୁ କିଛି ରଖିନାହିଁ । ତ଼ାଂଟ୍ରାଂଗ ଶିକାର କରିଛି, ଅଥଚ ତା'ପାଇଁ କିଛି ରଖିଲ ନାହିଁ ଭାବି ସେ ଭାରି ରାଗି-ଗଲ । ଖୁବ୍ ପାଟିତୁଣ୍ଡ କଲ । ତ଼ାଂଟ୍ରାଂଗ ହେତିକବେଳେ ଆସି ପହଞ୍ଚିଲା । କାଉକୁ ବୁଝେଇବାରେ ଲାଗିଲା । କିନ୍ତୁ କାଉ ବୁଝିଲା ନାହିଁ । ସେ ରାଗିକରି କାଉକୁ ଶରଟିଏ ମାରିଦେଲା । ପରଦିନ ତାଂଟ୍ରାଂଗର ଶରରେ ଜଣେ ଶିକାରୀ ମରିଥିବାର ଶୁଣାଗଲା । ଶରଟି ତା ଛାତିରେ ପଶିଥିଲା ।

ତ଼ାଂଟ୍ରାଂଗ ମଣିଷ ମାରିଥିବାରୁ ରାଜାଙ୍କ ଲୋକେ ତାକୁ ଧରି ନେଲେ । ତାକୁ ଜେଲ୍ ଦଣ୍ଡ ମିଳିଲା । ଜେଲ୍‌ରେ ଏକୁଟିଆ ରହି-ବାଟା ସମସ୍ତଙ୍କୁ ବାଧେ । ତ଼ାଂଟ୍ରାଂଗ ତ ସବୁ ପଶୁପକ୍ଷୀ ଓ କୀଟ

ପତଙ୍ଗଙ୍କ ସହିତ କଥାବାର୍ତ୍ତା କରିପାରେ । ସେ ସେମାନଙ୍କଠାରୁ ଗପ ଶୁଣେ । ତେଣୁ ଜେଲରେ ଥାଇ ବି ସେ ଏକାକୀ ବୋଲି ଅନୁଭବ କଲାନାହିଁ । ରାଜାଘର ଧନ କେଉଁଠିରୁ ଚୋରି ଗୋଟିଏ ଦୈନନ୍ଦିନ ଘଟଣା । ଜଗୁଆଳି ଥାଇ ବି ସବୁବେଳେ ଚୋରି ହୁଏ । ଚୋର ଧରାପଡ଼ନ୍ତି ନାହିଁ । ରାଜା ଖୁବ୍ ରାଗନ୍ତି । ଚଟିଆ ଚୋରି କରୁଥିବା କଥା ସେ ଜେଲରଙ୍କୁ କହିଲା । ଜେଲର ଶସ୍ୟ ଭଣ୍ଡାର ଜଗୁଆଳିଙ୍କୁ ଏ ଖବର ଜଣାଇଦେଲା । ରାଜା ମଧ୍ୟ ଏକଥା ଜାଣିଲେ । ଚଟିଆମାନଙ୍କୁ ସେଠୁ ହୁରୁଡ଼େଇ ଦିଆଗଲା । ସେଠ ଚୋରି ବନ୍ଦ ହୋଇଗଲା ।

ଦିନେ ହଜାର ହଜାର ପିମ୍ପୁଡ଼ି ଧାଡ଼ି ବାନ୍ଧି ଯାଉଥାଆନ୍ତି । ଛାଟ୍ରାଂଗ ତାଙ୍କୁ ଦେଖି ପଚାରିଲା "କାହିଁକି ପଳାଉଛକରେ ?"

ସେମାନେ କହିଲେ "ନଈରେ ବଢ଼ି ଆସୁଛି ।"

ଡ଼ାଟ୍ରାଂଗ ଏକଥା ଜେଲରଙ୍କୁ ଜଣାଇଦେଲା । ସେ ଯାଇ ରାଜାଙ୍କୁ ପ୍ରବଳ ବଢ଼ି ଆସୁଥିବା ସମ୍ପର୍କରେ ସତର୍କ କରିଦେଲା ।

ରାଜା ପ୍ରଥମେ ହସି ଉଡ଼େଇ ଦେଲେ । ପ୍ରତିକାର କିଛି କଲେ ନାହିଁ । କିନ୍ତୁ ଅଳ୍ପସମୟ ଭିତରେ ନଈରେ ବଢ଼ି ଚାଲିଆସିଲା । ଚାରିଆଡ଼ ପାଣିରେ ବୁଡ଼ିଗଲା । ରାଜା ନିଜର ଭୁଲ ବୁଝିପାରିଲେ । ସେ ଡ଼ାଟ୍ରାଂଗକୁ ଡକେଇ ପଠେଇଲେ ।

ରାଜା ତାକୁ ପରୀକ୍ଷା କଲେ । ବିଶ୍ୱାସ ହେବାରୁ ତାକୁ ଜେଲରୁ ଖଲାସ କରିଦେଲେ । ଯେଉଁ ଉପାୟ ର ଡ଼ାଟ୍ରାଂଗ ସବୁ କଥା ଜାଣିପାରୁଛି, ରାଜା ତାଠାରୁ ଶୁଣିଲେ । ତାପରେ ତାକୁ ନିଜର ମନ୍ତ୍ରୀ କରିଦେଲେ ।

ରାଜା ତାକୁ ସାଥିରେ ଝବୁନାଗାକୁ ନିଅନ୍ତି । ଯେଉଁ ଜୀବ ଯାହା କହନ୍ତି, ସେ ରାଜାଙ୍କୁ କହେ । ରାଜା ଶୁଣି ଭାରି ଖୁସି ହୁଅନ୍ତି ।

ରାଜାଙ୍କ ସବୁ ସଠିକ ଖବର ମିଳଯାଏ । ଶାସନ କରିବାକୁ ରାଜାଙ୍କୁ
ଅସୁବିଧା ହୁଏନାହିଁ । ସତ୍ୟରେ ଶାସନ ଚାଲିବାରୁ ଲୋକମାନେ
ବି ଖୁସିରେ ରହିଲେ । ଦେଖିଲେ ଅନ୍ୟାୟ ଆଉ ରହିଲା ନାହିଁ ।
ଲୋକଙ୍କର ବି ଅସୁବିଧା ହେଲାନାହିଁ ।

ଦିନକର କଥା । ରାଜା ସମୁଦ୍ର ପାର ହେଉଥାନ୍ତି । ସାଥିରେ
ଡାଟ୍ରାଙ୍ଗ । ଡଙ୍ଗା ଚାଲିଥାଏ । ଡାଟ୍ରାଙ୍ଗ ଡଙ୍ଗା କଡରେ ବସି ମାଛ-
ମାନଙ୍କ ସଙ୍ଗରେ ଗପୁଥାଏ । ମାଛଟିଏ ଗୋଟିଏ ମଜା ଗୀତ
ଗାଇଲା । ଡାଟ୍ରାଙ୍ଗ ଗୀତ ଶୁଣି ହସି ହସି ବେଦମ ହୋଇଗଲା ।
ଏଇ ସମୟରେ ତା ପାଟିରୁ ମଣିଟି ପାଣିରେ ପଡ଼ି ଭାସିଗଲା ।
ଡାଟ୍ରାଂଗ ଆଉ କିଛି ଶୁଣି ପାରିଲା ନାହିଁ । ସେ କାଠ ହୋଇ-
ଗଲା । ସେ ଖୁବ୍ କାନ୍ଦିଲା । କାନ୍ଦିକରି ରାଜାଙ୍କୁ ସବୁ କହିଲା ।
ରାଜା ଆଶ୍ୱାସନା ଦେଲେ । ବ୍ୟସ୍ତ ନ ହେବାକୁ କହିଲେ ।
ବୁଡ଼ାଳମାନଙ୍କୁ ପଠେଇ ମଣି ଖୋଜିବାର ପ୍ରତିଶ୍ରୁତି ମଧ୍ୟ ଦେଲେ ।

ବୁଡ଼ାଳମାନେ ସମୁଦ୍ର ଭିତରେ ବୁଡ଼ି ବୁଡ଼ି ବହୁ ଦିନ ଧରି
ମଣି ଖୋଜିଲେ । କିନ୍ତୁ ପାଇଲେ ନାହିଁ । ଡାଟ୍ରାଂଗ ଖୁବ୍
ବିଚଳିତ ହୋଇପଡ଼ିଲା । ନିଜେ ଖୋଜିବାକୁ ଯିବାପାଇଁ ରାଜାଙ୍କ
ଅନୁମତି ଲୋଡ଼ିଲା । ରାଜା ବି ଆପତ୍ତି କଲେନାହିଁ ।

ଡାଟ୍ରାଂଗ ସମୁଦ୍ର କୂଳକୁ ଗଲା । ସେଠି ବସି ବସି ସ୍ଥିର-
କଲା ଯେ ମଣି ପଡ଼ିଥିବା ଜାଗା ପର୍ଯ୍ୟନ୍ତ ସେ ସମୁଦ୍ରକୁ ପୋତିଦେବ
ଯେ ଜାଗାଟି ଶୁଖିଲେ ମଣି ଖୋଜିବାକୁ ଆଉ ତାକୁ ଅସୁବିଧା
ହେବନାହିଁ । ସେ ବହୁତ ଲୋକ ଲଗାଇ ସମୁଦ୍ରକୁ ପୋତିବାକୁ
ଆରମ୍ଭ କଲା । ଲୋକମାନେ ଖୁବ୍ ଖଟିଲେ । ସମୁଦ୍ରରେ ବାଲି
ପକାଇଲେ । କିନ୍ତୁ ସମୁଦ୍ର ପୋତି ହେଲା ନାହିଁ । ଯେଉଁଠି ଥିଲା
ସେଇଠି ରହିଲା । ଯାହା ବାଲି ପଡ଼ିଲା, ଲହରୀ ଆସି ତାକୁ ଧୋଇ-

ନଏ । କିଛି ଚିହ୍ନ ବି ରହେ ନାହିଁ । କିଛିଦିନ କାମ କଲାପରେ କାମିକାମାନେ ଅଣ୍ଡ ପଡ଼ିଲେ । କାମ କିଛି ହେଉ ନ ଥିବାରୁ ସେମାନେ ବି ଅନୁଭବ କଲେ । ତାଙ୍କୁ ଘରକୁ ଛାଡ଼ି ସେମାନେ ଚାଲିଗଲେ । ତାଙ୍କୁ କନ୍ତୁ ଫେରିଲା ନାହିଁ । ଏକାକୀ ରହିଗଲା । ରାତିଦିନ ସେ ଏକୁଟିଆ ବାଲି ପକାଏ । କେବେ ହେଲେ ସେ ବନ୍ଦ କରେନାହିଁ । ବାଲି ପକାଇ ଶେଷରେ ସେ ମରିଗଲା ।

ସେଠାରେ ଗୋଟେ ଘ୍ରେଟିଆ ମୁଣ୍ଡିଆଟିଏ ଥିଲା ସେଠୁ ମଣି ହଜିଥିବା ଜାଗାଟି ପରିଷ୍କାର ଦେଖାଯାଏ ।

ରାଜାଙ୍କ ଆଦେଶ ଅନୁସାରେ ସେଇ ମୁଣ୍ଡିଆରେ ତାକୁ ସମାଧି ଦିଆଗଲା !

ତା ପରଦିନ ସକାଳ । ଘ୍ରେଟ କଙ୍କଡ଼ାଟିଏ ଆସି ବାଲି ତାଡ଼ିଲା । ଆଗରୁ ଏ କଥା କେବେ ଦେଖାନଥିଲା । ଲୋକେ କହିଲେ ଖାଲି ବାଲି ପଡ଼ୁନାହିଁ । ତାଙ୍କ ଆସି ସମୁଦ୍ର ପୋତାରେ ଲାଗିଗଲା ।

ଏବେ ବି ଆମେ ସମୁଦ୍ର କୂଳକୁ ଗଲେ ଦେଖୁ—ଘ୍ରେଟ ତାଙ୍କ କଙ୍କଡ଼ା ଛୁଆ ବାଲିଖୋଳାରେ ଖୁବ୍ ବ୍ୟସ୍ତ । ସେମାନେ ବାଲିରେ ସ୍ତୂପ କରନ୍ତି । ଲହଡ଼ି ତାକୁ ଧୋଇଦିଏ । କିନ୍ତୁ ସେମାନଙ୍କ କାମ ବନ୍ଦ ହୁଏନାହିଁ । ପୁଣି ସେମାନେ ବାଲିରେ କାମ କରନ୍ତି ।

କେତେ ଯୁଗ ବିତିଗଲାଣି । ଏବେ ବି ଭୂଏଶ୍ୱନାମରେ ଲୋକେ କହନ୍ତି, ତାଙ୍କର ଆତ୍ମା କଙ୍କଡ଼ା ଛୁଆ ରୂପରେ ଏବେ ମଧ୍ୟ ମଣି ଖୋଜୁଛି । ଏମାନେ ମଣିଷକୁ ବାରବାର ଚେତେଇ ଦିଅନ୍ତି ଯେ, ଆନନ୍ଦରେ ଭୋଳ ହୋଇ ନିଜର ଆହ୍ୱାନ ହରାଅ ନାହିଁ ।



# ଭଲପାଇବା ପଥର

ଭିଏତ୍‌ନାମର ଗୋଟିଏ ଛୋଟ ପ୍ରଦେଶ । ନୁଏନ୍ ଲସି ସେଠାର ଶାସକ । ତାଙ୍କ ସ୍ତ୍ରୀଙ୍କ ନାଁ ଆନ୍ ଓ ଝିଅଙ୍କ ନାଁ ନାମ୍ । 'ଟି' ନଈକୂଳରେ ତାଙ୍କର ସୁନ୍ଦର ରାଜପ୍ରାସାଦ । ସେହି ପ୍ରାସାଦରେ ସେମାନେ ରହନ୍ତି ।

ଉଆସର ଉପର ମହଲରେ ଗୋଟିଏ ଛୋଟ ଘର । ସେଠୁ ବହୁଦୂର ପର୍ଯ୍ୟନ୍ତ ନଈଟି ଦେଖାଯାଏ । ନାମକୁ ସେ ଘରଟି ଖୁବ୍ ଭଲ ଲାଗେ । ସେଇ ଘରେ ବସି ବହୁଦୂର ପର୍ଯ୍ୟନ୍ତ ସେ ନଈକୁ ଦେଖେ । ଉଙ୍ଗା ଟିବ ର ଦୃଶ୍ୟ ତାକୁ ଖୁବ ଭଲଲାଗେ । ଦିନସାରା ସେ ଝରକା ପାଖରେ ବସିପଡ଼େ । ସିଲେଇ କରେ, ଫୁରୁସତ-ବେଳେ ନଈକୁ ଅନାଇ ରହେ । ରାତିରେ ସେଠି ସେ ଶୁଏ ।

ଦିନକର କଥା । ନାମ୍ ସକାଳେ ତା ଘରେ ବସି ପଢ଼ୁଥାଏ । ହଠାତ୍ ଗୋଟିଏ ସୁନ୍ଦର ଗୀତର ମୂର୍ଚ୍ଛନାରେ ତାର ଧ୍ୟାନ ଭାଙ୍ଗିଗଲା । ଗୀତଟି ଶୁଣିବା ପାଇଁ ସେ ନଈ ଭିତରକୁ ଚାହିଁଲା । ନଈ ଭିତରେ ଗୋଟିଏ ଯୁବକ ମାଛଧରାଳି ଗୀତ ଗାଉଥିଲା । ତା ଚେହେରାଟି ତାକୁ ଖୁବ ଭଲ ଲାଗିଲା । କିନ୍ତୁ ଦୂରରେ ଥିବାରୁ ତା ମୁହଁ ସେ ଦେଖି ପାରୁନଥିଲା । ଯୁବକଟିର ସ୍ୱର ତ ରାଜା ଝିଅର ମନ କିଣି ନେଇଥିଲା । ତେଣୁ ଯୁବକଟି ନିଶ୍ଚୟ ସୁନ୍ଦର ହୋଇଥିବ ବୋଲି ସେ ଅନୁମାନ କରିନେଲା । ଏହାପରଠୁ ସବୁଦିନ ସକାଳେ ନାମ୍ ଝରକା ପାଖରେ ଆସି ବସେ । ଯୁବକଟିର ଗୀତ ଶୁଣେ ।

ଗୀତ ନ ଶୁଣିବା ପର୍ଯ୍ୟନ୍ତ ଝରକା ପାଖ ଛାଡ଼ି ସେ କୁଆଡ଼େ ଯାଏ ନାହିଁ ।

ଏମିତି କେତେଦିନ ବିତିଗଲା । ସବୁଦିନ ପରି ଦିନେ ନାମ୍ ମାଛ ଧରାଳିର ଗୀତକୁ ଅପେକ୍ଷା କରି ବେଳ ଆଖିର ହେଲା, କିନ୍ତୁ ସେ ନଦୀକୁ ଆସିଲା ନାହିଁ କି ଗୀତ ବି ଗାଇଲା ନାହିଁ ।

ତା ପରଦିନ ମଧ୍ୟ ସେଇମିତି କଟିଗଲା । ତେବେ ବି ଡଙ୍ଗାର ଦେଖାନାହିଁ । ନାମ୍‌କୁ କିଛି ଭଲ ଲାଗିଲା ନାହିଁ । ସେ କିଛି ଖାଇଲା ନାହିଁ କି କାହାରି ସାଙ୍ଗେ କଥା ମଧ୍ୟ କହିଲା ନାହିଁ । ଦିନ-ରାତି ଖାଲି ଝରକା ପାଖରେ ଚୁପ୍‌ଚାପ୍ ହୋଇ ବସିରହେ । ପରିଚାରିକା ତା'ର ଏ ଅବସ୍ଥା ଦେଖି ଭାରି ଡରିଗଲା । ଯେତେ ବୁଝାଇଲେ ନାମ୍ ବୁଝିଲା ନାହିଁ । ଶେଷକୁ ସେ ରାଜାଙ୍କୁ ଯାଇ ଖବର ଦେଲା ।

ନୁହ୍ୟନ୍‌ଲିପି ପରିଚାରିକାଠାରୁ ସବୁ କଥା ଶୁଣିଲେ । ସେ ମାଛଧରାଳୀକୁ ଧରି ଆଣିବା ପାଇଁ ହୁକୁମ ଦେଲେ । ରାଜକର୍ମଚାରୀ-ମାନେ ଯୁବକଟିକୁ ଖୋଜି ପାଖ ଗାଁରେ ପାଇଲେ । ତା ନାଁ ହେଉଛି ସାନ୍ । ନୁହ୍ୟନ୍‌ଲିପିଙ୍କ ନିକଟକୁ ତାକୁ ଅଣାଗଲା । ତାକୁ ସାଙ୍ଗରେ ନେଇ ରାଜା ନାମ୍ ପାଖକୁ ଉପରକୁ ଗଲେ । ସେମାନେ ଘରେ ପଶିବା ପୂର୍ବରୁ ରାଜାଙ୍କ ଆଦେଶରେ ସାନ୍ ଗୀତ ଗାଇଲା । ନାମ୍ ଗୀତ ଶୁଣି ହଠାତ୍ ଚମକପଡ଼ି ଦୌଡ଼ି ଆସିଲା । ଗୀତ ଗାଉଥିବା ଲୋକଟିକୁ ଦେଖାଇ ରାଜା, ନାମ୍‌କୁ କହିଲେ, "ଝିଅ ! ଏଇ ହେଉଛି ସେଇ ସାନ୍ ଯାହାର ଗୀତକୁ ତୁ ଭଲପାଉ ।"

ନାମ୍ ସାନ୍‌କୁ ଚାହିଁଲା । ସାନ୍‌ର ମୁହଁ ଭାରି ଅସୁନ୍ଦର ଓ ବିଭତ୍ସ । ଚାହିଁ ହୁଏନାହିଁ । ତାକୁ ଦେଖି ସାଙ୍ଗେ ସାଙ୍ଗେ ନାମ୍‌ର ମୁହଁ ଶୁଖିଗଲା । ସେ ତାଙ୍କ ଦୁଇହାତରେ ମୁହଁ ଘୋଡ଼ାଇ ଖୁବ

ଯୋରରେ ପଳାଇ ଗଲା । ଗଲାବେଳେ ଚିତ୍କାର କରୁଥିଲା । 'ନା ! ନା ? ସେ ଏପରି ଅସୁନ୍ଦର ହୋଇ ପାରେନା । ମୁଁ ତାକୁ ଭଲ ପାଏ ନାହିଁ । ତାକୁ ତୁମେ ଏଠୁ ନେଇଯାଅ, ନେଇଯାଅ ।"

ସାନ୍ ମନଦୁଃଖରେ ତା ଗାଁକୁ ଫେରିଗଲା । ନାମ୍‌କୁ ଦେଖିବା ମୋଟେ ତାର ମନହେଲେ । ନା ପୁଣି ଅଶୋଭନୀୟ ପରି-ସ୍ଥିତିରେ । ତଥାପି ତାର ଅପୂର୍ବ ସୌନ୍ଦର୍ଯ୍ୟରେ ସେ ମୁଗ୍‌ଧ । ତାର କଥା ସବୁବେଳେ ତା ମନରେ ଆସେ । ସବୁବେଳେ ନାମ୍ କଥା ସେ ଭାବେ । ତାକୁ ଦେଖିବାକୁ ତା'ର ସବୁବେଳେ ଇଚ୍ଛା ହେଲେ ବି ଆଉ ସେ ଆସିପାରେ ନାହିଁ । ଦେଖି ବି ପାରେନାହିଁ । ସବୁବେଳେ ନାମ୍ କଥା ଝୁରିଝୁରି ତାର ଖାଇବା ପିଇବା ବନ୍ଦ ହୋଇଗଲା । ଅଳ୍ପଦିନ ଭିତରେ ସେ ରୁଗ୍‌ଣ ହୋଇଗଲା । କୌଣସି ଚିକିତ୍ସା ତାକୁ ରୋଗମୁକ୍ତ କରିପାରିଲା ନାହିଁ । ସେ ମରିଗଲା । ପ୍ରଥାନୁଯାରେ, ତା ଶବକୁ ଗୋଟିଏ କାଠବାକ୍‌ସରେ ରଖା ହୋଇ ସନ୍ଧ୍ୟାରେ କବର ଦିଆଗଲା । ତା ପରିବାରର ଲୋକମାନେ ରାତିରେ କବର ପାଖରେ ରହିଲେ ।

ସକାଳେ ବନ୍ଧୁବାନ୍ଧବ କବରଖାନାରୁ ଘରକୁ ଫେରିଲେ । ସେମାନେ ଘରେ ଗୋଟିଏ ମୂଲ୍ୟବାନ ଶ୍ରେଷ୍ଠ ଧଳାପଥର ପଡ଼ିଥିବାର ଦେଖି ଆଶ୍ଚର୍ଯ୍ୟ ହୋଇଗଲେ । ଗାଁରେ ଏଇ ପଥର ବିଷୟରେ ବେଶ୍ ଆଲୋଚନା ହେଲା । ଶେଷରେ ଲୋକଙ୍କ ସମ୍ମତି ଅନୁଯାରେ ନୁଚୁନ୍‌ଲସିଙ୍କ ନିକଟକୁ ଏହା ପଠାଗଲା ।

ରାଜା ପଥରକୁ ଦେଖି କହିଲେ—"ଏହା ହେଉଛି ଭଲ ପାଇବାର ପଥର ।" ସେ ଗୋଟିଏ କପ୍ ଟିଏ ଅଣାଇ ସେଥିରେ ପଥରଟିକୁ ବୁଡ଼େଇ ଦେଲେ । କପ୍ ଭିତରେ ଗୋଟିଏ ମାଛ-ଧରାଳୀର ଡଙ୍ଗା ଏପଟେ ସେପଟେ ହେବାର ଦେଖାଗଲା । ସମସ୍ତେ ଆଶ୍ଚର୍ଯ୍ୟ ହୋଇଗଲେ ।

ରାଜା ମୁହଁକୁ ଲୁଚାଇ କହିଲେ—"ପ୍ରେମର ସ୍ମୃତି ସବୁବେଳେ ପାଇଁ ରହେ । ତାହା ମୃତ୍ୟୁ ପରେ ମଧ୍ଯ ମିଳାଇଯାଏ ନାହିଁ ।

ରାଜା ରୂ କଣ୍ଠିକୁ ନାମ୍‌କୁ ଦେଇଦେଲେ । ନାମ୍‌ ରୂ କପ୍‌ ଭିତରେ ସେଇ ଦୃଶ୍ୟ ଦେଖି ଶିହରି ଉଠିଲା । ତାର ଭୁଲ ଜାଣି ପାରିଲା । ଫେରିବା ପାଇଁ ବାଟ ତାର ନଥିଲା । ସେ ଭାବିଲା— ନାଉରିଟିର ଗୀତର ମୂର୍ଚ୍ଛନାରେ ସେ ପାଗଳ ହୋଇଛି । ଭଲ ବି ପାଇଛି । ପ୍ରେମ ବି ନେଇଛି, କିନ୍ତୁ ତା ବଦଳରେ କ'ଣ ଦେଇଛି ? ତାକୁ ଗାଳି ଦେଇ ବିଦାକରି ଦେଇଛି ।

ଦୁଃଖରେ ସେ ଭାଂଗିପଡ଼ିଲା । କଣ୍ଠିକୁ ନେଇ ଉପର ଘରକୁ ଚାଲିଗଲା । ସେଠି ସେ ଚୌକିରେ ବସେ । କପ୍‌ଟିକୁ ଆଣି କୋଳରେ ଥୁଏ । ଜଂଗାରେ ନାଉରିଟି ଏପଟ ସେପଟ ହେଉଥିବାର ସେ ଦେଖେ । ଖୁବ୍‌ କାନ୍ଦେ । ତାର ଲୁହଗୁଡ଼ିକ ରୂ କପ୍‌ ଭିତରେ ପଡ଼େ । ବିନ୍ଦୁ ବିନ୍ଦୁ ହୋଇ ତାହା ମିଳାଇଯାଏ । ଯେତେବେଳେ, ସବୁ ବିନ୍ଦୁ ମିଳେଇଯାଏ, ନାମ୍‌ ଅନୁଭବ କରେ ସତେ ଯେମିତି ତାର ଜୀବନ ନାହିଁ, କ୍ଲାନ୍ତ ଶ୍ରାନ୍ତ ସେ । ଚୁପ୍‌ ହୋଇ ଖାଲି ବସିରହେ ।

ଏମିତି ଭାବି ଭାବି ନାମ୍‌ ବି ମରିଗଲା । ଦୁହେଁ ଅନ୍ୟ ଜଗତରେ ଏକାଠି ରହିଲେ ।

ଭିଏତ୍‌ନାମରେ ଏବେ ବି ଲୋକେ ବିଶ୍ବାସ କରନ୍ତି, ପ୍ରତ୍ୟେକ ଯୁବକ ଯୁବତୀଙ୍କ ପ୍ରେମ ଏ ଜୀବନରେ ସରେ ନାହିଁ । ପରଜୀବନକୁ ବି ଲମ୍ବିଥାଏ । ଯଦି ଦୁଇଜଣ ପରସ୍ପରକୁ ଭଲପାଆନ୍ତି, ଅଥଚ ଏ ଜୀବନରେ ମିଳନ ସମ୍ଭବ ହୁଏନାହିଁ, ତେବେ ବି ପରବର୍ତ୍ତୀ ଜୀବନରେ ସେମାନେ ନିଶ୍ଚୟ ମିଳିତ ହୁଅନ୍ତି ।

# ଅପେକ୍ଷାରତ ପାହାଡ଼

(ଉତ୍ତର ଭିଏତ୍‌ନାମର ଲାଙ୍ଗସନ ନିକଟସ୍ଥ ସମୁଦ୍ର ନିକଟରେ ଗୋଟିଏ ପାହାଡ଼ । ତା ଉପରେ ପଥରଟିଏ । ତାକୁ ଦେଖିଲେ ଆଶ୍ଚର୍ଯ୍ୟ ଲାଗେ । ମନେହୁଏ ସତେଯେମିତି ଜଣେ ସ୍ତ୍ରୀଲୋକ ପିଲାଟିଏ କାଖେଇ ସମୁଦ୍ରକୁ ଚାହିଁ ଠିଆ ହୋଇଛି । ନାବିକମାନେ ତାକୁ କହନ୍ତି "ଅପେକ୍ଷାରତ ପାହାଡ଼ ।" ଜନଶ୍ରୁତି କହେ, ଗୋଟିଏ ସ୍ତ୍ରୀଲୋକ ସେଠାରେ ଅପେକ୍ଷା କରି କରି ପଥର ପାଲଟି ଯାଇଛି ।)

ଅନେକଦିନ ତଳେ ଭିଏତ୍‌ନାମର ଲାଂଗ୍‌ସନ୍ ଗାଁରେ ଜଣେ କୃଷକ ଓ ତାର ସ୍ତ୍ରୀ ରହୁଥିଲେ । ସେମାନଙ୍କର ଦୁଇଟି ପିଲା— ଗୋଟିଏ ପୁଅ ଆଉ ଗୋଟିଏ ଝିଅ । ସେତେବେଳକୁ ପୁଅ ଲାନ୍‌ର ବୟସ ଚଉଦ ଓ ଝିଅ ନାମ୍‌ର ବୟସ ନଅ ବର୍ଷ । ସେ ବର୍ଷ ଭୀଷଣ ବତାସ ହେଲା । ସେଥିରେ କୃଷକ ଓ ତା ସ୍ତ୍ରୀ ମରିଗଲେ । ଲାନ୍ ଓ ନାମ୍ ପରସ୍ପରକୁ ଖୁବ ଭଲପାଆନ୍ତି । ସେ ଏକାଠି ମିଶି ତାଙ୍କ ଜମିବାଡ଼ି ଚାଷ କରି ଚଳିଯାଆନ୍ତି ।

ଦିନେ ଲାଂଗ୍‌ସନ୍‌କୁ ଗୋଟିଏ ସର୍କସଦଳ ଆସିଥିଲା । ଗାଁ ଲୋକଙ୍କ ସହିତ ଲାନ୍ ଓ ନାମ୍ ସର୍କସ ଦେଖିବାକୁ ଯାଇଥିଲେ । ସେ ସର୍କସ ଦଳରେ ଜଣେ ଭବିଷ୍ୟତ ବକ୍ତା ଥିଲେ । ସବୁ ଲୋକଙ୍କ ପରି ନିଜ ଭବିଷ୍ୟତ ଜାଣିବା ପାଇଁ ଲାନ୍‌ର ମଧ୍ୟ ଖୁବ୍ ଆଗ୍ରହ ହେଲା । ସେ ଯାଇ ଭବିଷ୍ୟତ ବକ୍ତାଙ୍କୁ ତାର ଭବିଷ୍ୟତ କହିବାପାଇଁ ଅନୁରୋଧ କଲା । ଭବିଷ୍ୟତ ବକ୍ତା ଲାନ୍‌କୁ କହିଲେ "ସେ ଓ ତା ଭଉଣୀ ପରସ୍ପରକୁ ଖୁବ୍ ଭଲ ପାଆନ୍ତି । ଭବିଷ୍ୟତରେ ସେମାନେ

ସ୍ୱାମୀ ସ୍ତ୍ରୀ ହେବେ ।" ଲିନ୍ ଯଦିଓ ଏହା ବିଶ୍ୱାସ କରିବାକୁ ପ୍ରସ୍ତୁତ ନଥିଲା, ତଥାପି ସେ ଜାଣିଥିଲା ଯେ ଭବିଷ୍ୟତ ବକ୍ତାଙ୍କ କଥା ଅନ୍ୟଥା ହେବନାହିଁ । ଏକଥା ଘଟିବାକୁ ଦେବନାହିଁ ବୋଲି ସେ ମନେ ମନେ ସ୍ଥିର କଲା । ସେ କିନ୍ତୁ ଜ୍ୟୋତିଷଙ୍କ ଭବିଷ୍ୟତବାଣୀ ବିଷୟରେ ନାମ୍‌କୁ କିଛି କହିଲା ନାହିଁ ।

ତା ପରଦିନ ରବିବାର । ଭାଇଭଉଣୀ ଦୁହେଁ ଜାଳେଣି କାଠ ପାଇଁ ଜଙ୍ଗଲକୁ ଗଲେ । ବଣରେ ନାମ୍ ଖାଇବା ତିଆରି କରୁ-ଥାଏ । ଲିନ୍ ଜଙ୍ଗଲରୁ କାଠ ସଂଗ୍ରହ କରୁଥାଏ । ବେଳେ ବେଳେ ନାମ୍‌କୁ ଆସି ଉଣ୍ଡୁଥାଏ । ଯେତେବେଳେ ନାମ୍ ରନ୍ଧାବଢ଼ାରେ ଖୁବ୍ ବ୍ୟସ୍ତଥିଲା, ଲିନ୍ ଛପି ଛପି ଯାଇ କୁରାଢ଼ିରେ ତା ପଛପଟ ମୁଣ୍ଡରେ ଚୋଟେ ଦେଲା । ତାପରେ ବୁଲିପଡ଼ି ସେ ଖୁବ୍ ଜୋରରେ ଦୌଡ଼ିଲା । ଅଣନିଶ୍ୱାସୀ ହୋଇ ସେ ଦୌଡ଼ୁଥାଏ । ପଛକୁ ଟିକିଏ ବି ବୁଲିପଡ଼ି ଅନାଇ ନାହିଁ । ପୂରା ଗୋଟିଏ ଦିନ ସେ ଦୌଡ଼ିଲା । ସେତେବେଳକୁ ସେ ଲିଂଗସନ୍‌ଠାରୁ ବହୁଦୂରରେ । ସେଠି ଟିକିଏ ବିଶ୍ରାମ ନେଲା । ତା ପରେ ପାଖରେ ଥିବା ଗାଁକୁ ଗଲା ।

ସେଠାରେ ସେ ତାର ନାଁ ବଦଳେଇ ଚାନ୍ ବୋଲି କହିଲା । ବାପା ମା ଛେଉଣ୍ଡ ପିଲା ବୋଲି ପରିଚୟ ଦେଇ ଗୋଟିଏ କମାର ଘରେ ଚାକିରି କଲା । ଚାନ୍ ଖୁବ୍ ପରିଶ୍ରମୀ । ସେ କଠିନ ପରିଶ୍ରମ କରେ । କମାର ତା ଉପରେ ଖୁସି ହୋଇ-ଗଲା । ସବୁ କାମ ତାକୁ ଶିଖାଇ ଦେଲା । ଅଳ୍ପଦିନ ଭିତରେ ସେ ଜଣେ ସୁଦକ୍ଷ କମାର ପାଲଟିଗଲା ।

କମାରଟି ଚାନ୍‌କୁ ନିଜ ପୁଅ ପରି ଭଲପାଏ । କିଛିଦିନ ପରେ ସେ ଚାନ୍‌କୁ ସମସ୍ତ ଦାୟିତ୍ୱ ଦେଇ ଅବ୍ୟାହତି ନେଇଗଲା । ଅଳ୍ପଦିନ ଭିତରେ ତାର ନାଁ ଡାକ ହୋଇଗଲା । [illegible]ବା ପର୍ବରୁ

ସେ ତାର ସମସ୍ତ ସମ୍ପତ୍ତି ଟାନ୍ ନାଁରେ ଉଇଲ କରି ଦେଇଥିଲା । ଟାନ୍‌ର କିଛି ସମ୍ପତ୍ତି ହୋଇଗଲା । ସେ ଖୁବ୍ ପରିଶ୍ରମୀ । ତେଣୁ ସେ ବେଶ୍ ଭଲରେ ଚଳିଲା ।

ମିଷ୍ଟର ଉଇଲସନ୍ ପାଖ ଗାଁର ଜଣେ କୃଷକ । ତାଙ୍କର ସମସ୍ତ କାମ ସେ ଟାନ୍ କାରଖାନାରେ କରନ୍ତି । ଯିବା ଆସିବାରେ ତାଙ୍କ ସାଙ୍ଗରେ ଟାନ୍‌ର ସମ୍ପର୍କ ଖୁବ୍ ଭଲ । ଥରେ ଉଇଲସନ୍, ତାଙ୍କ ସ୍ତ୍ରୀ ଓ ଝିଅ ଆନ୍ ତା ଘରକୁ ଆସିଲେ । ଟାନ୍ ତ ଏକୁଟିଆ । ତା ଘରଟି କିନ୍ତୁ ବେଶ୍ ବଡ଼ । ତେଣୁ ସେମାନେ ସେଠାରେ କିଛିଦିନ ରହିଗଲେ ।

ଆନ୍ ତ ଦେଖିବାକୁ ଭାରି ସୁନ୍ଦର । ଟାନ୍, ଆନ୍ ପ୍ରେମରେ ପଡ଼ିଗଲା । ଉଇଲ୍‌ସନ୍ ଦମ୍ପତ୍ତି ଏଥିରେ ଖୁସି ହୋଇଗଲେ । ସେମାନଙ୍କର ବାହାଘର ମଧ୍ୟ କରିଦେଲେ । ତାପରେ ଉଇଲ୍‌ସନ୍ ତାଙ୍କ ସ୍ତ୍ରୀକୁ ନେଇ ଘରକୁ ଫେରିଗଲେ ।

ଟାନ୍‌ର ପରିବାର ହେଲା – ସେ ଓ ତା ସ୍ତ୍ରୀ । ଉଭୟେ ଖୁବ୍ ଖୁସିରେ ରହିଲେ । କିଛିଦିନ ପରେ ସେମାନଙ୍କର ଗୋଟିଏ ପୁଅ ବି ହେଲା । ଛୋଟ ପରିବାରଟି ବେଶ୍ ଆନନ୍ଦରେ ସମୟ କଟାଉଥିଲେ ।

ଟାନ୍‌ର ବ୍ୟବସାୟ ଖୁବ୍ ଭଲ ଚାଲୁଥାଏ । ବ୍ୟବସାୟ ସଂକ୍ରାନ୍ତରେ ବେଳେବେଳେ ସେ ଆଗରୁ ବିଦେଶ ଯାଉଥିଲା । ଏବେ କିନ୍ତୁ ତା ପୁଅକୁ ଛାଡ଼ି ସେ ଆଉ ବିଦେଶ ଯାଏ ନାହିଁ । ସେ ଏଣିକି ଜଣେ ବିଶ୍ବାସୀ ଚାକରକୁ ସବୁ କଥା ବୁଝେଇ ବିଦେଶ ପଠାଏ ।

ଦିନକର କଥା, ଦର୍ପଣ ଆଗରେ ଠିଆ ହୋଇ ଆନ୍ ମୁଣ୍ଡ କୁଣ୍ଡାଉଥାଏ । ତା ବାଳଗୁଡ଼ିକ ଭାରି ସୁନ୍ଦର । ଟାନ୍ ପଛପଟେ

ଠିଆ ହୋଇଥାଏ । ଆନ୍‌ର ସୌନ୍ଦର୍ଯ୍ୟକୁ ସେ ମନେ ମନେ ଖୁବ୍
ପ୍ରଂଶସା କରୁଥାଏ । ତା'ର ସ୍ୱାମୀ ବୋଲି ଗର୍ବ ବି ଅନୁଭବ
କରୁଥାଏ । ଆନ୍‌ର ମୁଣ୍ଡ ପଛପଟେ ଗୋଟିଏ ଲମ୍ବା କଟାଦାଗ
ଉପରେ ହଠାତ୍ ଟାନ୍‌ର ଆଖି ପଡ଼ିଗଲା । ସେ ଦାଗ କେମିତି
ହେଲା ବୋଲି ସେ ଆନ୍‌କୁ ପଚାରିଲା ।

ବନା ଦୋଷରେ ଆନ୍‌ର ବାଇ ତାକୁ ମାରିଦେବ ବୋଲି
କେମିତି କୁରାଢ଼ୀରେ ହାଣିଦେଲା ଓ ବଣୁଆମାନେ ତାକୁ ଜଙ୍ଗଲରେ
ଦେଖି ମିଷ୍ଟର ଉଇଲସନ୍‌ଙ୍କ ଘରକୁ ନେଇଗଲେ, ସେ ସବୁକଥା
ଟାନ୍‌କୁ ଗୋଟି ଗୋଟି କରି କହିଲା ।

ତାପରେ ସେ ଉଇଲସନ୍‌ଙ୍କ ଘରକଥା ମଧ୍ୟ ତାକୁ କହିଲା ।
ଉଇଲସନ୍‌ଙ୍କର ପିଲାପିଲି ନଥିଲେ । ସେଇଦିନଠାରୁ ମିଷ୍ଟର
ଉଇଲସନ୍ ତାକୁ ନିଜ ଝିଅ ପରି ପାଳିଲେ । ପ୍ରଥମେ ତା'ର କିଛି
ମନେ ରହୁନଥିଲା । ତାପରେ ଆସ୍ତେ ଆସ୍ତେ ତା'ର ସ୍ମରଣଶକ୍ତି
ଫେରିଆସିଲା । ସେ ଏ କଥା କାହାଆଗେ କହି ନଥିଲା । ଟାନ୍
ହେଉଛି, ପ୍ରଥମ ଲୋକ, ଯାହାକୁ କି ସେ ଏକଥା କହୁଛି ।

ଟାନ୍ ସବୁ ଶୁଣିଲା । ଆନ୍ ପ୍ରକୃତରେ କିଏ—ସେ କଥା
ଜାଣିବାକୁ ତାର ଆଉ ବାକି ରହିଲା ନାହିଁ । ସେ ଭାରି ବ୍ୟତିବ୍ୟସ୍ତ
ହୋଇପଡ଼ିଲା । ଜ୍ୟୋତିଷଙ୍କ କଥା ଯେ ଅକ୍ଷରେ ଅକ୍ଷରେ ସତ,
ଏକଥା ସେ ଜାଣିପାରିଲା । କିନ୍ତୁ ଆନ୍‌କୁ ସେ ଏ ବିଷୟରେ କିଛି
ହେଲେ କହିଲା ନାହିଁ । ମନକଥା ମନରେ ଥାଏ । ବ୍ୟବସାୟ
ସଂକ୍ରାନ୍ତରେ ବିଦେଶ ଯିବାକୁ ସେ ସ୍ଥିର କଲା । ଦିନେ ଦୁଇଦିନ
ପରେ ସେ ବିଦେଶ ଯିବାକୁ ବାହାରିଲା । ଶୀଘ୍ର ଫେରିଆସିବ
ବୋଲି କହି ଆନ୍‌ଠାରୁ ବିଦାୟ ନେଲା ।

ଦିନ ପରେ ଦିନ—ସପ୍ତାହ ପରେ ସପ୍ତାହ—ମାସ ପରେ ମାସ ବିତିଗଲା । ଏହିପରି ଛ'ମାସ କଟିଗଲା । ହାନ୍ ତେବେ ବି ଫେରିଲା ନାହିଁ । ଆନ ସବୁଦିନେ ସମୁଦ୍ରକୂଳକୁ ଯାଏ । ସବୁ ନାଉରିଙ୍କୁ ହାନ୍ କଥା ପଚାରେ । କେହି କିଛି କହିପାରନ୍ତି ନାହିଁ ।

ହାନକୁ ଖୋଜିବାକୁ ସେ ଚାରିଆଡ଼କୁ ଲୋକ ବି ପଠାଇଲା, କୌଣସିଠାରେ ତା'ର ପତ୍ତା ମିଳିଲା ନାହିଁ ।

ଆନର ମୁଣ୍ଡିଫଟ ଦାଗ କଥା ହାନ୍ ଠିକନକି ପଚାରୁଥିବାରୁ ତାର ମନେପଡ଼ିଲା । ଶେଷରେ ସେ ହାନ୍‌ର ପ୍ରକୃତ ପରିଚୟ ଜାଣିପାରିଲା । ସେ ସେ ତା ଭାଇ ହାନ୍—ଏହା ତାକୁ ଆଉ ଅଛପା ରହିଲା ନାହିଁ । ସଙ୍ଗରେ ଶ୍ଳେଟ ପୁଅଟିକୁ ଧରି ଲିଙ୍ଗସନ୍‌ରେ ଥିବା ପୁରୁଣା ଘରକୁ ଆନ୍ ଫେରିଆସିଲା ।

ପ୍ରତିଦିନ ଆନ୍ ତା ପୁଅକୁ ନେଇ ପାହାଡ଼ ଉପରକୁ ଯାଏ । ତାକୁ ଦେଖାଇ ସେ ତା ସ୍ୱାମୀର ଡ଼ଙ୍ଗା ଫେରିବା ବାଟକୁ ଚାହିଁ-ରହେ । ତାର ଦୃଢ଼ ବିଶ୍ୱାସ—ହାନ୍ ନିଶ୍ଚୟ ଲିଙ୍ଗସନକୁ ଫେରିଆସିବ । ସେଥିପାଇଁ, ସେଇଠାରେ ଠିଆହୋଇ ସେ ସମୁଦ୍ରକୁ ଚାହିଁ ରହେ । ପୁଅକୁ କାଖରେ ଧରି ସବୁଦିନ ସେ ସେଠାରେ ହାନ୍‌ର ଫେରନ୍ତା ବାଟକୁ ଅପେକ୍ଷା କରେ । ସେହି ପାହାଡରେ ଅପେକ୍ଷା କରି କରି ଆନ୍ ଓ ତାର ପୁଅ ପଥର ପାଲଟିଗଲେ ।

ଯାହା ଘଟି ଗଲାଣି, ତାକୁ ଗ୍ରହଣ କରିନିଅ । ନହେଲେ ଜୀବନ ବିଷମୟ ହେବ ।

———

# ପଡ଼ୋଶୀ

ଭିଏତ୍‌ନାମର ଗୋଟିଏ ଛୋଟ ସହର । ସେଠି ଆନ୍ ବୋଲି ଝିଅଟିଏ ଥିଲା । ତା'ର ତିନିଭଉଣୀ ଓ ଦୁଇ ଭାଇ । ସେମାନେ ସମସ୍ତେ ତା'ଠୁ ଛୋଟ । ବାପା ମା'ଙ୍କ ପାଖରେ ସେମାନେ ରହନ୍ତି । ବାପା ତାଙ୍କର କମାର । ସକାଳୁ କମାରଶାଳକୁ ଯାଆନ୍ତି । ସେଠାରେ ଦିନଯାକ ରହନ୍ତି । ପିଲାମାନେ ସକାଳୁ ସ୍କୁଲକୁ ଚାଲିଯାଆନ୍ତି । ସେଠାରେ ସାରାଦିନ କଟାନ୍ତି । ଛୁଟି ଦିନରେ ବି ଘରେ ରହନ୍ତି ନାହିଁ । ଘରୁ ଖସିଯାଇ ସାଙ୍ଗମାନଙ୍କ ସାଥିରେ ଖେଳନ୍ତି । ବେଳେ ବେଳେ ନଈରେ ବି ପହଁରନ୍ତି ।

ଘରେ ମା'ଙ୍କ ଛଡ଼ା ଆନ୍ ବି ପଢ଼େ । ଘରର ବଡଝିଅ ସେ । ପ୍ରଥାନୁସାରେ ମା'ଙ୍କୁ ସବୁ କାମରେ ସାହାଯ୍ୟ କରେ । ଦିନଯାକ ମା ଝିଅ ଘରପାଇଟିରେ ପ୍ରାୟ ବ୍ୟସ୍ତ ରହନ୍ତି । ଯାହାହେଉ, ଦିନଗୁଡ଼ିକ ସେମାନଙ୍କର ସୁଖରେ କଟିଯାଏ ।

ଆନ୍‌ଙ୍କ ପାଖଘରେ ଜଣେ ବିଧବା ବୁଢ଼ୀଙ୍କ ଘର । ତାଙ୍କ ନାଁ ଶ୍ରୀମତୀ ଏକ୍‌ସ । ତାଙ୍କ ଗୁଣ ଯୋଗୁ କେହି ତାଙ୍କୁ ଭଲପାଆନ୍ତି ନାହିଁ । ପିଲାମାନଙ୍କର ତାଙ୍କୁ ଭାରି ଡର । ବାହାରେ ଖେଳିଲା ବେଳେ, ଟିକିଏ ପାଟିକଲେ, ଶ୍ରୀମତୀ ଏକ୍‌ସ ତାଙ୍କୁ ଗାଳିଦିଅନ୍ତି । ବଲ୍‌ଟିଏ ତାଙ୍କ ଅଗଣାରେ ପଡ଼ିଲେ, ଚିରି ଦିଅନ୍ତି । ଘାସ ଦଳି ହୋଇଯିବ ବୋଲି ଡରନ୍ତି । ସେ ପିଲାଙ୍କୁ ଅଗଣାକୁ ଛାଡ଼ନ୍ତି ନାହିଁ । ନିଜେ ବାଡ଼ି ସାହାଯ୍ୟରେ ବଲ୍‌ଟିକୁ ବାହାର କରି ଆଣି ଦିଅନ୍ତି ।

ଏଣେ ଏଣେ ପିଲମାନଙ୍କ ଖେଳ ସେ ଦେଖନ୍ତି । ବେଳନିୟମ ହୋଇଗଲେ, ଖେଳର ନିୟମ ବତାଇ ଦିଅନ୍ତି । ସବୁ କଥାରେ ଅନ୍ୟମାନଙ୍କୁ ଉପଦେଶ ଦିଅନ୍ତି । ପଡ଼ୋଶୀମାନଙ୍କ ଭିତରେ କଳି ଚାଲିଲେ ସେ ମଧ୍ୟସ୍ଥ ହୁଅନ୍ତି । ଯେମାନଙ୍କ ଘରେ ବଳେବଳେ ପଶି ତାଙ୍କ ବିବାଦ ତୁଟେଇ ଦିଅନ୍ତି । କିନ୍ତୁ ତାଙ୍କ ପେଟରେ ଲୁଣ ମିଳାଏ ନାହିଁ । ଯାହାକୁ ଦେଖନ୍ତି, ତାକୁ ସବୁକଥା କହନ୍ତି । ସବୁ ଆଡ଼େ ବୁଲି ବୁଲି ମଧ୍ୟ ଗପନ୍ତି । ଲୋକମାନେ ତାଙ୍କୁ ଚୁଗୁଲିଆ ବୋଲି କହନ୍ତି । ଆଉ କେତେକ ତାଙ୍କୁ 'ଢେଙ୍ଗୁରା' ବୋଲି ଡ଼ାକନ୍ତି !

ଶ୍ରୀମନ୍ତ ଏକ୍ସ କାହାଘରେ ମୁହୂର୍ତ୍ତେ ରହି ପାରନ୍ତିନାହିଁ । କିନ୍ତୁ ଆନନ୍ଙ୍କ ଘରେ ଘଣ୍ଟା ଘଣ୍ଟା ବସିରହନ୍ତି । ତା ମା'ଙ୍କୁ ବହୁତ କଥା କହନ୍ତି, ପରାମର୍ଶ ମଧ୍ୟ ଦିଅନ୍ତି । ଆନନ୍ଦ ସବୁ ପିଲପରି ତାଙ୍କୁ ଘୃଣା କରୁଥିଲା । କିନ୍ତୁ ପାଖରେ ରହି ତାଙ୍କର ବହୁତ ଭଲଗୁଣ ସେ ଦେଖିଲା । ଠାଉଁରୁଟି କପରି ତିଆରି କରିବ ତାକୁ ସେ ବତାଇ ଦେଲେ । ନୂଆ ନୂଆ ରନ୍ଧା ଓ ସିଲେଇ ମଧ୍ୟ ଶିଖାଇ ଦେଲେ ।

ଆନନ୍ଦର ମା ଶ୍ରୀମନ୍ତ ଏକ୍ସଙ୍କୁ ଭଲ ପାଆନ୍ତି । ସମ୍ମାନ ବି ଦିଅନ୍ତି । ସେ ତାଙ୍କୁ ଚା ଓ ପିଠା ନ ଖୁଆଇ ଛାଡ଼ନ୍ତି ନାହିଁ । ଅସୁବିଧା ବେଳେ ଆନନ୍ଦର ମା ଶ୍ରୀମନ୍ତ ଏକ୍ସଙ୍କୁ ପଚାରନ୍ତି । ସେ ଯାହା କହନ୍ତି ଅନନ୍ଙ୍କ ମା ତାହା ମାନନ୍ତି ଆଉ କହନ୍ତି, "ଶ୍ରୀମନ୍ତ ଏକ୍ସଙ୍କ କଥାରେ ଚାଲିଲେ, ବିପଦ ଜମା ନାହିଁ । ଅସୁବିଧା ମଧ୍ୟ ହେବନାହିଁ । ତାଙ୍କଠାରୁ ବଳି ଆଉ ସୁନ୍ଦର ପରାମର୍ଶ କେହି ଦେଇ ପାରିବେନାହିଁ ।"

ଦିନେ ଶ୍ରୀମନ୍ତ ଏକ୍ସ ଗିବା ପରେ ଆନନ୍ଦ ତା ମା'କୁ ପଚାରିଲା "ବୁଢ଼ୀ ପରକଥାରେ ମୁଣ୍ଡ ଖେଳାନ୍ତି ଆଉ ପରଚର୍ଚ୍ଚା କରନ୍ତି ବୋଲି ସହର ଯାକ ତ କେହି ତାଙ୍କୁ ଭଲ ପାଆନ୍ତି ନାହିଁ । ତୋର

ତାଙ୍କ ସାଂଗରେ କେମିତି ଭଲ ପଡ଼ୁଛି ? ତୁ କାହିଁକି ତାଙ୍କୁ ଏତେ ଭଲପାଉ ଆଉ ସମ୍ମାନ ଦେଖାଉ ?"

ଅନନ୍ତର ମା ଝିଅକୁ ବୁଝାଇ କହିଲେ "ପ୍ରତି ମଣିଷ ଦୁର୍ବଳ ; ଦୋଷଶୂନ୍ୟ ନୁହେଁ । ଶ୍ରୀମତୀ ଏକ୍‌ସ ଜଣେ ମଣିଷ । ସେଥିରୁ ବ୍ୟତିକ୍ରମ କପରି ହେବ ? ଯେଉଁମାନେ ତାଙ୍କୁ ସମାଲୋଚନା କରନ୍ତି, ସେମାନେ ତାଙ୍କଠାରୁ ଅନେକ ଖରାପ । ଶ୍ରୀମତୀ ଏକ୍‌ସ ହେଉଛନ୍ତି ସ୍ପଷ୍ଟବାଦୀ । ପରର ଦୋଷ ଦେଖିଲେ ଖୁଣନ୍ତି । ମନରେ ତାଙ୍କର ଘୃଣାଭାବ ନଥାଏ । ଲୋକକୁ ବଦଳାଇ ଭଲ କରିବା ନେଇ ଯେ ଖୁଣେ, ସେ ପ୍ରକୃତରେ ପରମ ବନ୍ଧୁ । ଶ୍ରୀମତୀ ଏକ୍‌ସ ସେଇ ଶ୍ରେଣୀର ଲୋକ । ତା ଛଡ଼ା ସେ ସତ କହନ୍ତି— ଅପ୍ରିୟ ହେଲେ ମଧ୍ୟ । ସେ ଜଣେ ବିଶ୍ବରଶୀଳ ମହିଳା । ନିଜର ସାମର୍ଥ୍ୟ ଅନୁଯାୟୀ ସେ ଅନ୍ୟକୁ ସାହାଯ୍ୟ କରନ୍ତି । ଅବଶ୍ୟ ସେ ପରକୁ ସମାଲୋଚନା କରନ୍ତି । ବେଳେ ବେଳେ ପରଚର୍ଚ୍ଚା ବି କରିଥାନ୍ତି । ତାଙ୍କର ଭଲଗୁଣ ମନ୍ଦଗୁଣ ତୁଳନାରେ ନଗଣ୍ୟ । ତାଛଡ଼ା, କୌଣସି ମଣିଷକୁ ତା ଜୀବଦଶାରେ ବିଚାର କରିବା ଉଚିତ ନୁହେଁ । ଆମେ ଲୋକର ଯାହା ଦେଖୁ ତାହା ତାର କାର୍ଯ୍ୟକଳାପର ଅଂଶ ବିଶେଷ । ତେଣୁ ମଣିଷ ମଲାପରେ, ତାର ସମସ୍ତ ବିବରଣୀ ମିଳିବ । ବିଚାର କରିବ, ସେ ଭଲ କି ମନ୍ଦ ।"

ହଠାତ୍ ଦିନେ ଖବର ଆସିଲା—ଶ୍ରୀମତୀ ଏକ୍‌ସ ଆଉ ଇହ ଜଗତରେ ନାହାନ୍ତି । ତାଙ୍କର ତ ନିଜର କେହି ନଥିଲେ । ସହରର ଲୋକେ ତାଙ୍କ ଘରେ ରୁଣ୍ଡ ହୋଇଗଲେ । ଶବସତ୍କାରର ବ୍ୟବସ୍ଥା କଲେ । ଶବ ଉଠାଇବା ବେଳେ ଦେଖିଲେ, ମୁଣ୍ଡ ପାଖରେ କିଛି କାଗଜ । ପଢ଼ିବାବେଳକୁ ଦେଖାଗଲା ସେଇଟା ତାଙ୍କର ଉଇଲ୍ । ସେଥିରେ ସେ କ'ଣ ଲେଖିଛନ୍ତି —ଜାଣିବା ପାଇଁ ସମସ୍ତଙ୍କର

କୌତୁହଳ ହେଲା । ତେଣୁ ଉଇଲ୍‌ଟିକୁ ସମସ୍ତଙ୍କ ଆଗରେ ପଢ଼ାଗଲା ।

ଜଣା ପଡ଼ିଲା—ଶ୍ରୀମତୀ ଏଡ଼ମଣ୍ଡଙ୍କର ବେଶ୍ ସମ୍ପତ୍ତି ଅଛି । ତାହାର ବିଶିଷ୍ଟ ଅଂଶ ସେ ସହରର ଉନ୍ନତିମୂଳକ କାର୍ଯ୍ୟପାଇଁ ଦାନ କରି ଯାଇଥିଲେ । ତା' ଛଡ଼ା ସେଥିରେ ସେ ଗ୍ରେଟ ପିଲା-ମାନଙ୍କର ଖେଳିବା ପାଇଁ ବଡ଼ ଖେଳପଡ଼ିଆ, ଡ଼ାକ୍ତରଖାନା ପାଇଁ ନୂଆ ଯନ୍ତ୍ରପାତି କିଣିବାର ବ୍ୟବସ୍ଥା କରିଥିଲେ । ସ୍କୁଲର ଘର ନଥିବା ଉପଲବ୍ଧି କରି ନୂତନ ଘର ନିର୍ମାଣ ପାଇଁ କିଛି ଅର୍ଥ ମଧ୍ୟ ଦାନ କରିଥିଲେ । ତାଙ୍କ ଉଇଲରେ ଲେଖାଥିଲା ଆନ୍‌ର ମା ବ୍ୟତୀତ ସହରର ଅନ୍ୟମାନେ ତାଙ୍କ ପ୍ରତି ପରାନ୍ମୁଖ । ସେ ଜଣକ କେବଳ ତାଙ୍କର ପରମ ବନ୍ଧୁ । ତା'ପାଇଁ ସେ ତାଙ୍କର ଅନ୍ତରର ଆଶୀର୍ବାଦ ଓ ସ୍ନେହ ରଖିଯାଇଛନ୍ତି । ସହରର ଲୋକେ ଉଇଲ ପଢ଼ି ଆଶ୍ଚର୍ଯ୍ୟ ହୋଇଗଲେ ।

ଶ୍ରୀମତୀ ଏଡ଼ମଣ୍ଡଙ୍କୁ ଓ ତା ମା'ର ବହୁମୂଲ୍ୟ ଉପଦେଶଗୁଡ଼ିକୁ ଆନ୍ କେବେହେଲେ ଭୁଲିପାରିଲା ନାହିଁ । ଜୀବନଯାକ ସେ ତା ମା'ଙ୍କର ଉପଦେଶ ମନେରଖି କାମ କରୁଥିଲା । ଆନ୍ ଆଜ ନାହିଁ, ଶ୍ରୀମତୀ ଏଡ଼ମଣ୍ଡ ନାହାନ୍ତି । ମା' ବି ନାହାନ୍ତି । ଶ୍ରୀମତୀ ଏଡ଼ମଣ୍ଡଙ୍କ କଥା ଓ ମା'ଙ୍କର ଉପଦେଶ ଭିଏନାର ଲୋକେ ଏବେ ବି ତାଙ୍କ ପିଲାଙ୍କୁ କହନ୍ତି ।

ଉପରଠାଉରିଆ ଭାବରେ ମଣିଷକୁ ବିଚାର କରିହେବ ନାହିଁ । ତାକୁ ତନ୍ନତନ୍ନ କରି ଦେଖିବାକୁ ହେବ । ବିଚାରକୁ ନେବାକୁ ହେବ । ତାହାହେଲେ ସେ ଭଲ ମଣିଷ କି ନା ଜାଣିବ ।

—0—

# ଛିନ୍ନପଥ

ନିର୍ମଳ ଜହ୍ନପକ୍ଷ ରାତିରେ ଆକାଶକୁ ଚାହିଁଲେ, ଧଳା ଫର୍‌ଫର୍ ଚନ୍ଦ୍ରରାଜିଏ ବଡ଼ ଚେଳପରି ଦେଖାଯାଏ । ତାକୁ ହିଁ କୁହାଯାଏ ରୂପାନଈ ।

'ନୂନୁ, ସ୍ୱର୍ଗ ରାଜ୍ୟର ସବୁଠାରୁ ସୁନ୍ଦରୀ ସୂତାକଟାଳି । ତାକୁ ସମସ୍ତେ 'ନୁ' ବୋଲି ଡ଼ାକନ୍ତି । ସବୁଦିନ ତାର ଅରଟଟି ନେଇ ସେ ରୂପାନଈ କୂଳକୁ ଚାଲିଯାଏ । ରୂପେଲି ଢେଉକୁ ଦେଖେ । ସୂତା ବି କାଟେ ।

'ନୁଲଙ୍ଗ' ସ୍ୱର୍ଗର ମେଷପାଳକ । ସେ ଦେଖିବାକୁ ବେଶ୍ ସୁନ୍ଦର । ଲୋକେ ତାକୁ ଲଙ୍ଗ୍ ବୋଲି ଡାକନ୍ତି । ସେ ବି ସବୁଦିନ ରୂପାନଈ କୂଳକୁ ତାର ମେଣ୍ଢାକୁ ଧରି ଚାଲିଯାଏ । ସେଠାରେ ସେ ମେଣ୍ଢା ଚରାଏ । ନିଜେ ବସି ବସି ରୁପାନଈର ଢେଉକୁ ଦେଖେ ।

ସବୁଦିନ ନଈକୂଳରେ ଲଙ୍ଗ୍ ଓ ନୁଙ୍କର ଦେଖାହୁଏ । ଦିନେ ଲଙ୍ଗ୍ ନୁ ପାଖକୁ ଆସିଲା । ଉଭୟେ ଗପିଲେ । ସେହି ଦିନଠୁଁ ଲଙ୍ଗ୍ ସବୁଦିନ ଆସେ, ନୁ ସାଙ୍ଗରେ ଗପେ । ନୁ ତ ଦେଖିବାକୁ ଖୁବ୍ ସୁନ୍ଦରୀ । ଲଙ୍ଗ୍ ମଧ୍ୟ ସୁନ୍ଦର । ସୁନ୍ଦର ପୁଅଟି ସୁନ୍ଦରୀ ଝିଅର ପ୍ରେମରେ ପଡ଼ିଗଲା ।

ଏମିତି କିଛିଦିନ ଚାଲିଲା । ମେଣ୍ଢାମାନେ ସେଠାରେ ଥିବା ଘାସସବୁ ଶେଷ କରିଦେଲେ । ଲଙ୍ଗ୍ ତା ମେଣ୍ଢାମାନଙ୍କୁ ଅନ୍ୟ ଜାଗାକୁ ନେବାପାଇଁ ଠିକ୍ କଲା । ନୁ ମଧ୍ୟ ତା ସାଙ୍ଗରେ ଯିବାକୁ

ବାହାରିଲା । ଲଙ୍ଗ୍ନୁର ଅରଣ୍ୟକୁ ସେଠାକୁ ନେଇଗଲା । ସେଇ-ଦିନଠୁ ଦୁହେଁ ଛଡ଼ାଛଡ଼ି ହୁଅନ୍ତି ନାହିଁ । ଯେଉଁଠିକି ଯାଆନ୍ତି ଏକାଠି ଯାଆନ୍ତି । ଲଙ୍ଗ୍ଟାର ମେଣ୍ଢାପଲକୁ ଚରିବାକୁ ଛାଡ଼ିଦେଇ ନୁଂକୁ ବସି ଗପ କରେ ।

କିଛିଦିନ ପରେ ଦୁହେଁ ବାହାହେବାପାଇଁ ସ୍ଥିରକଲେ । ସ୍ୱର୍ଗର ରାଜାଙ୍କ ଅନୁମତି ନ ନେଲେ ବାହାଘର ହୋଇପାରିବ ନାହିଁ । ସେଥିପାଇଁ ସେମାନେ ସ୍ୱର୍ଗ ରାଜାଙ୍କ ପାଖକୁ ଗଲେ । ତାଙ୍କର ମନ କଥା କହିଲେ । ସ୍ୱର୍ଗର ରାଜା ବାହାଘର ପାଇଁ ଅନୁମତି ଦେଲେ ।

ବାହାଘର ପରେ ଖେଳ ହୋଇ କର୍ତ୍ତବ୍ୟରେ ଅବହେଳା ନ କରିବାକୁ ସ୍ୱର୍ଗରାଜା ତାଗିଦା କଲେ । ଅବହେଳା କଲେ— ସେମାନଙ୍କୁ କଠିନ ଦଣ୍ଡ ଦିଆହେବ ବୋଲି ମଧ୍ୟ ସତର୍କବାଣୀ ଶୁଣାଇଲେ ।

ବାହାହୋଇ ସେମାନେ ଖୁବ୍ ଖୁସିରେ ରହିଲେ । ଏକାଠି ଫୁଲ ତୋଳନ୍ତି । ନଈରେ ପହଁରନ୍ତି । ପାହାଡ଼ ଚଢ଼ନ୍ତି ଓ ମଜାମଜାଳିଆ କରନ୍ତି । ଏମିତି ଭାବରେ ତାଙ୍କର ସମୟ କଟିଯାଏ । ଉଭୟେ ସ୍ୱର୍ଗ ରାଜାଙ୍କ ତାଗିଦା ଭୁଲିଗଲେ । ନିଜ କାମପ୍ରତି ମନ ଦେଲେ ନାହିଁ । ଅବହେଳାରୁ ଲଙ୍ଗ୍ର କେତୋଟି ମେଣ୍ଢା ହଜି-ଗଲା । ନୁ ଆଉ ସୂତାକାଟିଲା ନାହିଁ । ସୂତାକଟା କଥା ଏକବାରେ ଭୁଲିଗଲା ।

ଏ ଖବର ସ୍ୱର୍ଗରାଜାଙ୍କ ପାଖରେ ଯାଇ ପହଞ୍ଚିଲା । ରାଜା ଉଭୟଙ୍କୁ ଧରିନେଲେ । ସେମାନଙ୍କ ବିଚାର ହେଲା । ଅଭିଯୋଗ ଗୁଡ଼ିକ ସତ ବୋଲି ବି ପ୍ରମାଣିତ ହେଲା । ଏଣିକି ଦଣ୍ଡଦେବାର କଥା । ରାଜାଙ୍କର ଦୟା ହେଲା । ବୟସର ଚପଳତା ହେତୁ କର୍ତ୍ତବ୍ୟରେ ଅବହେଳା ହୋଇଛି । ତେଣୁ ରାଜା ଆଦେଶଦେଲେ,

ରୂପାନନ୍ଦର ଏପଟେ ଲଙ୍ଗ୍ ରହିବ ନେଣ୍ଟ ଚରାଇବ । ଆରପଟେ ନୁ ସୂତା କାଟିବ । ଏଗାର ମାସ କାଳ ସେମାନେ ପରସ୍ପର ବଛିନ୍ନ ହୋଇ ରହିବେ । ତା'ପରେ ବାରମାସର ପ୍ରଥମ ସପ୍ତାହରେ ଡାମଗ୍ରାଜମାନେ ଆସି ସେତୁ କରିବେ । ସେଇ ସେତୁ ବାଟେ ଲଙ୍ଗ୍ ଆଉ ନୁ ଆସି ମାସଟିଏ ପାଇଁ ଏକାଠି ରହିବେ ।

ରଜାଙ୍କ ଆଦେଶ ତ କେହି ଅମାନ୍ୟ କରିପାରିବେ ନାହିଁ । ନୁ ଆଉ ଲଙ୍ଗ୍ ନଈର ଦୁଇପଟକୁ ଚାଲିଗଲେ । ସେମାନେ ଗଲାବେଳେ କେହି କାହାକୁ ପଦଟିଏ କଥା ବି କହିଲେ ନାହିଁ । ପରସ୍ପରକୁ ଟିକଏ ଚାହିଁଲେ ବି ଅନେଇଲେ ନାହିଁ । ସେମାନେ ଦୁଃଖରେ ମ୍ରିୟମାଣ ହୋଇଯାଇଥିଲେ । ନିଜ ରହିବା ଜାଗାରେ ଉଭୟେ ଯେମିତି ପହଞ୍ଚିଛନ୍ତି, କାନ୍ଦି କାନ୍ଦି ସେମାନେ ଲୋଟି ପଡ଼ିଲେ । ଆଖିରୁ ସେମାନଙ୍କର ବୋହିଲା ଲୁହଧାର । ସେ ଲୁହ ତ ସ୍ୱର୍ଗରେ କେବଳ ରହିଲା ନାହିଁ । ତଳେ ବି ପଡ଼ିଲା । ସେଥିପାଇଁ ଭିଏତ୍‌ନାମରେ ସବୁଜାଗାରେ ଏକାବେଳେ ବର୍ଷା ହୁଏ । କାନ୍ଦି କାନ୍ଦି ତାଙ୍କ ଆଖିରୁ ଲୁହ ସରିଯାଏ । ଭିଏତ୍‌ନାମରେ ସେତେବେଳେ ବର୍ଷା ହେବା ବନ୍ଦ ହୋଇଯାଏ ।

ରଜାଙ୍କ ଆଦେଶରେ ପ୍ରତିବର୍ଷ ଡାମଗ୍ରାଜମାନେ ମାସଟିଏ ପାଇଁ ସ୍ୱର୍ଗକୁ ସେତୁ କରିବାକୁ ଚାଲିଯାଆନ୍ତି । ସେଥିପାଇଁ ଭିଏତ୍‌ନାମରେ ବର୍ଷରେ ମାସଟିଏ ଡାମଗ୍ରାଜଙ୍କୁ ଦେଖିବାକୁ ମିଳେନାହିଁ ।

ଏବେବି ଶୁକ୍ଳପକ୍ଷ ରାତିରେ ରୂପାନଈ ଦେଖାଯାଏ । ତାକୁ ଛାୟାପଥ ବୋଲି କହନ୍ତି । ଜର୍ଭିବ୍ୟରେ ହେଲା କଲେ ଦଣ୍ଡପାଇବା ସୁନିଶ୍ଚିତ ବୋଲି ତାହା ଆମକୁ ବାରମ୍ବାର ମନେ ପକାଇଦିଏ ।

# ମଇଁଷି

ଆଗେ ମଇଁଷିମାନେ ଦେଖିବାକୁ ସୁନ୍ଦର ଥିଲେ । ସେମାନଙ୍କର ଦେହର ଗଠନ ବେଶ ବଳିଷ୍ଠ ଥିଲା । ଦେହରୁ ଚକ୍‌ଚକ୍ ଜ୍ୟୋତି ବାହାରୁଥିଲା । ଶିଙ୍ଗ ଗୁଡ଼ିକ ମଧ୍ୟ ଲମ୍ବା ଆଉ ସୁନ୍ଦର ଥିଲା । ସେମାନେ ଜଙ୍ଗଲରେ ରହୁଥିଲେ । ସେମାନେ ଘୋର ଅଳସୁଆ ଓ ବୋକା ବି ଥିଲେ । ଏମିତିକି ନିଜେ ଭଲ ଘାସ ଖୋଜି ଖାଇବାର ଆଗ୍ରହ ତାଙ୍କର ନଥିଲା । ଅନ୍ୟ ପଶୁମାନେ କେଉଁଠି ଘାସ ଖାଉଥିବାର ଦେଖିଲେ ସେମାନେ ଦଳ ଦଳ ସେଠାକୁ ଯାଇ ଘାସକୁ ଶେଷ କରିଦିଅନ୍ତି । ଅନ୍ୟମାନଙ୍କ ପାଣି ପିଉଥିବା ଜାଗାକୁ ଯାଇ ପାଣି ପିଅନ୍ତି । ବେଳେ ବେଳେ ସବୁ ପାଣି ଶୋଷି ବି ଦିଅନ୍ତି । ସବୁବେଳେ ସେମାନେ ଅନ୍ୟ ପଶୁ-ମାନଙ୍କ ପିଛା ଧରିଥାଆନ୍ତି । ସେଥିପାଇଁ ଅନ୍ୟ ପଶୁମାନଙ୍କର ତାଙ୍କ ପ୍ରତି ବୈରଭାବ ଥିଲା ।

ମଇଁଷିମାନେ ଆଗେ ଜମା ଗାଧୋଉ ନଥିଲେ । ଓଦା ହେବାକୁ ମଧ୍ୟ ଡରୁଥିଲେ । ବର୍ଷାରେ ବି ସେମାନେ ଓଦା ନହୋଇ ଗଛମୂଳରେ ରହି ଯାଉଥିଲେ । ସେମାନେ ଘୋର ଅପରିଷ୍କାର । ତେଣୁ ଭୟଙ୍କର ଦେଖାଯାଆନ୍ତି । ଅନ୍ୟ ପଶୁମାନେ ସେଥିପାଇଁ ତାଙ୍କୁ ଘୃଣା କରୁଥିଲେ । ଏକେତ ସେମାନେ ଘୋର ବଳୁଆ । ତାଛଡ଼ା ଅନ୍ୟମାନଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ମଧ୍ୟ ନଥିଲା । ବରଂ ଅନ୍ୟମାନଙ୍କର ଖାଦ୍ୟପେୟ ଶେଷ କରିଦେଉ-ଥିବାରୁ ସେମାନେ ତାଙ୍କ ଉପରେ ରାଗୁଥିଲେ ।

ପ୍ରତିମାସରେ ଜଙ୍ଗଲର ସବୁ ପଶୁମାନଙ୍କର ସଭା ହୁଏ । ମଇଁଷିମାନଙ୍କର ତ ଗର୍ବ ବହୁତ । ସେମାନେ ମଧ୍ୟ ଗୋଠଛଡ଼ା । ସେଥିପାଇଁ ସେମାନେ ସେ ସଭାକୁ ଯାଆନ୍ତି ନାହିଁ । ଥରେ ସେ ସଭାରେ କେହି ଜଣେ ମଇଁଷିର ଗୋଠଛଡ଼ା କଥା ଉଠାଇଲା । ସମସ୍ତେ ହୋ ହୋ ହୋଇ ତାକୁ ସମର୍ଥନ କଲେ । ହାତୀ ସେମାନଙ୍କର ସଭାପତି । ଶୃଙ୍ଖଳା ପାଇଁ ସେ ବାରମ୍ବାର ଅନୁରୋଧ କଲା । ସମସ୍ତେ ନୀରବ ହେବାପରେ ହାତୀ କହିଲା—"ଯେତେବେଳେ ସବୁ ପଶୁମାନଙ୍କର ମଇଁଷିମାନଙ୍କ ପ୍ରତି ଘୃଣାଭାବ ହେଲଣି, ପ୍ରକୃତରେ ଆମକୁ କିଛି ବ୍ୟବସ୍ଥା କରି ସେମାନଙ୍କୁ ବାଟକୁ ଆଣିବାକୁ ହେବ । କ'ଣ କରିବାକୁ ହେବ, ତାହା ଆମମାନଙ୍କର ଚିନ୍ତାର ବିଷୟ । ସେ ବିଷୟରେ ଯାହା'ର ଯାହା କହିବାର ଅଛି କହନ୍ତୁ ।"

ବହୁତ ପଶୁ ଉଠି ଭିନ୍ନ ଭିନ୍ନ କଥା କହିଲେ । ଖୁବ୍ ପାଟିଭୁଣ୍ଡ ହେଲା । ଶେଷରେ ହରିଣ ପ୍ରସ୍ତାବ ଦେଲା ଯେ ବାଘ ପଶୁମାନଙ୍କ ମଧ୍ୟରେ ବଳୁଆ । ତେଣୁ ସେହି କେବଳ ପଶୁମାନଙ୍କର ପ୍ରତିନିଧି ହୋଇପାରିବ । ସେ ମଇଁଷିମାନଙ୍କ ପାଖକୁ ଯିବ । ସେମାନଙ୍କୁ ସବୁ ପଶୁଙ୍କର ଇଚ୍ଛା ଜଣାଇଦେଇ କହିବ—"ଏଥର ସେମାନେ ଗାଧୁଆ ପାଧୁଆ କରି ପରିଷ୍କାର ରହନ୍ତୁ । ଅନ୍ୟ ପଶୁମାନଙ୍କର ଘାସ ଖାଆନ୍ତୁନାହିଁ । ତାଙ୍କ ପାଣି ପିଇବା ମଧ୍ୟ ବନ୍ଦ କରିଦିଅନ୍ତୁ । ଗୋଠଛଡ଼ା ଢଙ୍ଗ ବି ଛାଡ଼ନ୍ତୁ । ସମସ୍ତଙ୍କ ସାଙ୍ଗେ ମିଳିମିଶି ଚଳନ୍ତୁ । ଯଦି ଏ କଥାରେ ସେମାନେ ରାଜି ନ ହୁଅନ୍ତି, ସେମାନଙ୍କୁ ପଶୁମାନେ ଜଙ୍ଗଲରୁ ବାହାର କରିଦେବେ ।" ହରିଣର ପ୍ରସ୍ତାବ ସମସ୍ତଙ୍କ ମନକୁ ଆସିଲା । ପ୍ରସ୍ତାବଟି ସର୍ବସମ୍ମତିକ୍ରମେ ଗୃହୀତ ହୋଇଗଲା ।

ପ୍ରସ୍ତାବ ଅନୁସାରେ ବାଘ ମଇଁଷିମାନଙ୍କ ପାଖକୁ ଗଲା । ମଇଁଷିମାନେ ଦଳବାନ୍ଧି ଗୋଟିଏ ଜାଗାରେ ରହନ୍ତି । ସେମାନଙ୍କୁ ବଳଭିତରେ ଦେଖି ବାଘ ଟିକିଏ ଶଙ୍କିଗଲା । ସେ ପାଖରେ ଥିବା ଗୋଟାଏ ଗଛ ଉପରେ ଚଢ଼ି ଯାଇ ବଡ ପାଟିରେ କହିଲା— "ମଇଁଷିମାନେ ! ତମେମାନେ ମୋ କଥା ଶୁଣିପାରୁଛ ତ ?" ମଇଁଷିମାନେ ପାଟିଶୁଣି ଆଶ୍ଚର୍ଯ୍ୟ ହୋଇ ମୁଣ୍ଡ ଟେକି ଗଛଆଡ଼କୁ ଚାହିଁଲେ । ଗଛ ଉପରେ ବାଘକୁ ଦେଖି ତାଙ୍କ ଭିତରୁ ବଡ଼ ମଇଁଷିଟି କହିଲା—"ହଁ ! ହଁ ! ଆମେ ତମ କଥା ଶୁଣିପାରୁଛୁ । ହେଲେ, ତମେ କିଏ ଆଉ କ'ଣ ଚାହୁଁଛ ସେ କଥା ଆଗ କୁହ ।"

ଗଛ ଉପରେ ଥାଇ ବାଘ ଉତ୍ତରଦେଲା—"ମୁଁ ବାଘ । ପଶୁମାନଙ୍କ ପ୍ରତିନିଧି । ପଶୁମାନେ ମୋତେ ତମପାଖକୁ ପଠାଇ-ଛନ୍ତି । ତାଙ୍କ ମତରେ ତୁମ୍ଭେମାନେ ପଶୁଜାତିର କଳଙ୍କ । ସେମାନେ କହନ୍ତି, ଏ କଳଙ୍କ ପସରକୁ ଧୁଆଇବାକୁ ପଡ଼ିବ । ତୁମେମାନେ ତମ ଢଙ୍ଗ ବଦଳାଅ । ଶନ୍ୟ ପଶୁର ଘାସ ଖାଇବ ନାହିଁ କି ପାଣି ପିଇବ ନାହିଁ । ଏଣିକି ସବୁଦିନ ଗାଧୋଇବ । ପରିଷ୍କାର ହେବ । ସବୁ ପଶୁମାନଙ୍କ ସାଥିରେ ମିଳିମିଶି ଚଳିବ ।"

ଏକଥା ଶୁଣି ପଣ୍ଡାମଇଁଷି ରାଗରେ ଗର୍ଜନ କରିଉଠି କହିଲା —"ଆମେ ତମ କଥା ଶୁଣିବାକୁ ପ୍ରସ୍ତୁତ ନୁହଁ । ତୁମେ ଏଠୁ ବାହାରିଯାଅ । ତମ ସାଙ୍ଗମାନଙ୍କୁ କହିଦେବ, ସେମାନଙ୍କୁ ଯଦି ଆମ କଥା ଭଲ ଲାଗୁନି, ତେବେ ସେମାନେ ବଣଛାଡ଼ି ଅନ୍ୟଆଡେ ଚାଲିଯାଆନ୍ତୁ । ଆମେ ସାଧାରଣପଶୁ ନୁହଁ । ଆମେ ହେଲୁ ବନୁଆ ପଶୁ । ଆମେ କଣ କରିବୁ ସେ କଥା ଆମେ ଜାଣୁ । ଆମେ ତମର ପରାମର୍ଶ ଲୋଡ଼ୁନାହୁଁ । ତୁମେ ଆମକୁ ଉପଦେଶ ଦେବାକୁ କିଏ ?

ଜାଣିଥା ! ଯଦି ତମେ ଓ ତମର ବନ୍ଧୁମାନେ ଆମକୁ ଆଉଥରେ ହଇରାଣ କର, ତା'ହେଲେ ଆମେ ତମ ସମସ୍ତଙ୍କୁ ନଷ୍ଟ କରିଦେବୁ ।

ବାଘ ଏକଥା ଶୁଣି ରାଗିଗଲା କିନ୍ତୁ ସେ ତ ଏକୁଟିଆ । ମଇଁଷିମାନେ ଦଳବାନ୍ଧି ରହିଛନ୍ତି । ତେଣୁ ସେ ଆଉ କିଛି ନ କହି ଚୁପ୍‌ଚାପ୍ ସଭାକୁ ଫେରିଆସିଲା । ପଣ୍ଡା ମଇଁଷିର ଧମକ ସଭାରେ କହିଲା ।

ସଭାରେ ସମସ୍ତେ ଏକଥା ଶୁଣି ଖୁବ୍ ଉତ୍ତେଜିତ ହୋଇ ପାଟିଭୁଣ୍ଡ କଲେ । ହାତୀ ଆଉଥରେ ଶୃଙ୍ଖଳାପାଇଁ ପାଟିକଲା । ତାପରେ ସେ କହିଲା—"ବନ୍ଧୁଗଣ ! ଆମକୁ ବାଟ ଦେଖାଇବା ପାଇଁ ଆସ ଭଗବାନଙ୍କୁ ପ୍ରାର୍ଥନା କରିବା ।"

ସମସ୍ତେ ପ୍ରାର୍ଥନା କଲେ । ପ୍ରାର୍ଥନା ପରେ ସମସ୍ତେ ନୀରବ ରହିଲେ । ଏହି ସମୟରେ ଗୋଟିଏ ନରମ ସ୍ୱର ଶୁଣାଗଲା— "ପଶୁଗଣ ! ତମେମାନେ ଠିକ୍ କହୁଛ । ଏପର୍ଯ୍ୟନ୍ତ ମଇଁଷିମାନେ ଅପରିଷ୍କାରରେ ରହିଲେଣି । ସେମାନେ ନିଜର ଚଳଣି ବଦଳେଇ-ବାକୁ ଚେଷ୍ଟା କରୁନାହାନ୍ତି । କହିଲେ ବି ଶୁଣୁନାହାନ୍ତି । ତେଣୁ ସେମାନେ ଦଣ୍ଡ ପାଇବା ଉଚିତ । ସବୁ ବାଘମାନେ ଯାଇ ମଇଁଷି ପଲଙ୍କୁ ଆକ୍ରମଣ କରନ୍ତୁ ।"

ଏକଥା ଶୁଣି ବାଘମାନେ ଦଳବାନ୍ଧି ଗଲେ । ଅତର୍କିତ ଭାବରେ ମଇଁଷି ପଲକୁ ଆକ୍ରମଣ କଲେ । ଲଢ଼େଇ ସରିଲାବେଳକୁ କୌଣସି ବାଘ ଆଘାତ ପାଇନଥିଲେ । ହେଲେ, ମଇଁଷିମାନଙ୍କ ମୂହଁ ଶୁଖିଯାଇଥିଲା । ସେମାନଙ୍କର ସୁନ୍ଦର ଶିଙ୍ଗଗୁଡ଼ିକ ଚଉଡ଼ା ହୋଇ ପଛକୁ ନଇଁ ପଡିଥିଲା । ଅନେକ ମଇଁଷି ତ ମରିଗଲେ । ଯେ ବଞ୍ଚିଗଲେ—ସେମାନେ ସମସ୍ତେ ଖଣ୍ଡିଆ ଖାବରା ହୋଇଥିଲେ । ଅପରିଷ୍କାର ରହିବାକୁ ଖଣ୍ଡିଆ ଗୁଡ଼ିକ ଘା ହୋଇଗଲା । ସେମାନେ

ଘରି କଷ୍ଟ ପାଇଲେ । ଥୋକେ ଝରଣା ପାଖକୁ ଗଲେ । ପାଣିରେ ବୁଡ଼ି ତାଙ୍କର ଘା ସବୁ ଭଲକରି ଧୋଇଲେ ।

ଅଳ୍ପଦିନ ପରେ ସେମାନେ ସୁସ୍ଥହୋଇ ନିଜ ନିଜ ଦଳକୁ ଫେରିଆସିଲେ । ସେମାନେ କଣ କରିବାକୁ ହେବ ସ୍ଥିର କରିବା ପାଇଁ ଗୋଟିଏ ସଭା କଲେ ।

ବଡ଼ ଓ ବୁଦ୍ଧିମାନ ମଇଁଷିମାନେ ସେ ସ୍ଥାନଗୁଡ଼ି ଛାଡ଼ିଯିବାକୁ ପରାମର୍ଶ ଦେଲେ । କିନ୍ତୁ ସେଠାରେ ରହି ଅନ୍ୟ ପଶୁମାନଙ୍କ ସଙ୍ଗେ ଆଉଥରେ ଲଢ଼େଇ କରିବାପାଇଁ ପିଲମାନଙ୍କର ଜିଦ୍ । ସେମାନେ ନିଜ ନିଜ ଭିତରେ ଯୁକ୍ତିତର୍କ ଓ କଳି ତକରାଳ କରୁଥିବା ସମୟରେ ଗୋଟିଏ ଅଚହ୍ନା ନରମ ସ୍ୱର ଶୁଣିଲେ--"ମଇଁଷି-ମାନେ ! ତୁମ୍ଭେମାନେ ଯେଉଁ ଦଣ୍ଡ ପାଇଲ, ଏହା ତମ ଦଣ୍ଡର ସାମାନ୍ୟ ଅଂଶ । ଆଜିଠାରୁ ତମେମାନେ ତମର ଅଳସୁଆମି ପାଇଁ ଦଣ୍ଡ ପାଇବ । ତମର ସୌନ୍ଦର୍ଯ୍ୟ ପାଇଁ ଗର୍ବଥିବାରୁ ତମେ ଅସୁନ୍ଦର ହେବ । ପଙ୍କରେ ଘାଣ୍ଟି ହେବ । କାଦୁଅ ଓ ପାଣିରେ ଅପରିଷ୍କାର ଭାବରେ ରହିବ । ବର୍ତ୍ତମାନ ତମେ ପାଖ ଗାଁରେ ଥିବା ଚାଷୀଙ୍କ ନିକଟକୁ ଯାଅ । ତମେ ତାଙ୍କର ଧାନକ୍ଷେତରେ ସବୁଦିନ ପାଇଁ ହଳ କରିବ ।"

ମଇଁଷିମାନେ ଏକଥା ଶୁଣି ମୁହଁ ଶୁଖାଇଦେଲେ । ସେଇ ଦିନଠୁ ମଇଁଷିମାନଙ୍କ ଚାନ୍ଦରେ କୁଜ । ଶିଙ୍ଗଗୁଡ଼ିକ ତାଂକର ଚେପ୍ଟା ଓ ଅଦରକାରୀ । ସେମାନେ ସେହିଦିନଠାରୁ ପଂକରେ ଗଡ଼ନ୍ତି ଓ ଧାନକ୍ଷେତରେ ହଳ କରନ୍ତି । କଥା ନମାନି ଉଦ୍ଧତ ହେବାରୁ ଓ ଗର୍ବ କରିବାରୁ ଭଗବାନ ଦଣ୍ଡ ଦେଲେ । ସେଇ ଦିନଠୁ ମଇଁଷିମାନଂକର ଏଇପରି ବଦାକାର ରୂପ ହୋଇଗଲା ।

—୦—

# ଚନ୍ଦା ମାଛ

ଏ କଥା ବହୁତ ପୁରୁଣା । ଭଏତ୍‌ନାମର ଗୋଟିଏ ଗ୍ରେଟ ଝରଣା । ସେଠି ଗୋଟିଏ ପ୍ରକାରର ମାଛ ରହୁଥିଲେ । ସେମାନେ ବଡ଼ି ବଡ଼ି ଖୁବ୍ ବେଶୀ ହେଲେ ଆଠଇଞ୍ଚ ଲମ୍ବ ହୁଅନ୍ତି । ଦେଖିବାକୁ ସେମାନେ ଅନ୍ୟ ମାଛପରି । ସେଇ ଗ୍ରେଟ ଝରଣାଟି ଛାଡ଼ି ସେମାନେ କୁଆଡ଼େ ଯାଆନ୍ତି ନାହିଁ ।

ଏଇ ଗ୍ରେଟ ଝରଣାଟି ଗୋଟିଏ ବଡ ନଈରେ ମିଶିଛି । ନଈ ପାଣି ଗୋଳିଆ । ତାର ସୁଅ ମଧ୍ୟ ପ୍ରଖର । ମାଛମାନେ ଝରଣା ମୁହଁରେ ଜଗିଥାଆନ୍ତି । କାହାକୁ ଝରଣା ଭିତରକୁ ଛାଡ଼ନ୍ତି ନାହିଁ । ଝରଣା ବାହାରକୁ ମଧ୍ୟ କୌଣସି ମାଛକୁ ଛାଡ଼ନ୍ତି ନାହିଁ । ସେଇ ଝରଣା ଛାଡ଼ି ସେମାନେ ବି କୁଆଡ଼େ ଯାଆନ୍ତି ନାହିଁ । ତେଣୁ କୌଣସି ବଡ଼ ମାଛର ଉପଦ୍ରବ ଅନୁଭବ କରନ୍ତି ନାହିଁ ।

ଏଇ ମାଛମାନଂକ ଜୀବନ ବଡ଼ ଶୃଙ୍ଖଳିତ । ବାପା ମାଛମାନେ ଖାଦ୍ୟ ସଂଗ୍ରହ କରନ୍ତି । ଝରଣା ମୁହଁ ମଧ୍ୟ ଜଗନ୍ତି । ମା ମାଛ-ମାନେ ଝରଣାଜଳ ତାଳରେ ଅଣ୍ଡା ଦିଅନ୍ତି । ତାକୁ ସେଠାରେ ଜଗନ୍ତି । ସେଥିପାଇଁ ସାପ କି ବେଙ୍ଗ ତାଂକ ଅଣ୍ଡା ଖାଇବାର ସୁଯୋଗ ପାଆନ୍ତି ନାହିଁ ।

ପିଲମାନେ ସ୍କୁଲ୍‌କୁ ଯାଇ ପାଠ ପଢ଼ନ୍ତି । ତେଣୁ ସେମାନେ ବଦ୍‌ମାସି କରିବାକୁ ସମୟ ପାଆନ୍ତି ନାହିଁ । ଅବସର ସମୟରେ

ସମସ୍ତେ ଖେଳନ୍ତି ବୁଲନ୍ତି ଓ ମଉଜ ମଜଲିସ୍‌ରେ ସମୟ କଟାନ୍ତି । ରାତିରେ ସମସ୍ତେ ଏକାଠି ହୁଅନ୍ତି, ଗୀତ ଗାଆନ୍ତି ଆଉ ନାଚନ୍ତି । ବେଶୀ ରାତି ହେଲେ, ସମବେତ ପ୍ରାର୍ଥନା ହୁଏ । ଆସନ୍ତା ଦିନଟି ନିରାପଦରେ ଓ ଖୁସିବାସିରେ କଟିବା ପାଇଁ ସେମାନେ ଭଗବାନଙ୍କୁ ପ୍ରାର୍ଥନା କରନ୍ତି ।

ସ୍କୁଲରେ ପିଲାମାନଙ୍କୁ ବହୁତ କଥା ଶିକ୍ଷା ଦିଆଯାଏ । ପୁଅ ପିଲାମାନଙ୍କୁ ଖାଦ୍ୟ ସଂଗ୍ରହ କରିବା ବିଷୟରେ ଓ ଝିଅ ପିଲା-ମାନଙ୍କୁ ଅଣ୍ଡା ଜଗିବା ଓ ବାହାର ଶିକାରୀମାନଙ୍କୁ ତଡ଼ିବା ବିଷୟରେ ତାଲିମ ଦିଆହୁଏ । ବିଶେଷ କରି ନଈ ବିଷୟରେ ସବୁ ପିଲାଙ୍କୁ ସତର୍କ କରି ଦିଆହୁଏ । ସେମାନଙ୍କୁ ବୁଝାଇ ଦିଆହୁଏ — ନଈରେ ବହୁତ ବଡ଼ ମାଛ ଅଛନ୍ତି । ସେମାନେ ଛୋଟ ମାଛ-ମାନଙ୍କୁ ଖାଇ ଯାଆନ୍ତି । ବଡ଼ ମାଛ ବିଷୟରେ ଧାରଣା ଦେବା-ପାଇଁ ସେମାନଙ୍କୁ ଛବି ଆଙ୍କି ଦେଖାଇ ଦିଆଯାଏ । ସେମାନଙ୍କ ରୂପର ବର୍ଣ୍ଣନା ମଧ୍ୟ କରାହୁଏ । ଶିକ୍ଷକ ନଈ ବିଷୟରେ ମଧ୍ୟ ପିଲାଙ୍କୁ ଧାରଣା ଦିଅନ୍ତି । ସେ କହନ୍ତି —'ନଈ ପାଣି ଆମ ଝରଣା ପାଣିପରି ସଫା ନୁହେ । ଏହା ଧୀରେ ଧୀରେ ବହେ ନାହିଁ । ଏହା ଖୁବ୍ ମଇଳା ଓ ଏହାର ସ୍ରୋତ ପ୍ରଖର । ଆମକୁ ସେଠି ପହଁରିବାକୁ କଷ୍ଟ ହେବ । ନଈ ବଢ଼ି ହେଉଛି ସବୁଠାରୁ ବଡ଼ ବିପଦ । ବଢ଼ିପାଣି ଧାନ କ୍ଷେତରେ ପଶିଯାଏ । ଆଉ ତମେମାନେ ଯଦି କୌଣସି ବାଟେ ଧାନକ୍ଷେତକୁ ଗଳିଯିବ ତେବେ ଉଦ୍ଧାର ପାଇବା ଅସମ୍ଭବ ।''

ଏଇ ଏକା କଥା ପିଲାମାନେ ପ୍ରତିବର୍ଷ ଶୁଣନ୍ତି । ସେମାନେ ମଧ୍ୟ କଥାମାନ ନେଇ ନଈକୁ ଯାଆନ୍ତି ନାହିଁ । ସେମାନେ ସମସ୍ତେ ଭଲ ପାଠ ପଢ଼ନ୍ତି । ମାଛମାନେ କୌଣସି ଦୁର୍ଯୋଗ ବା ଅସୁ-ବିଧାର ସମ୍ମୁଖୀନ ହୁଅନ୍ତି ନାହିଁ ସେମାନେ ତାଙ୍କ ଛୋଟ

ଝରଣାଟିରେ ଆନନ୍ଦରେ ଥାଆନ୍ତି, କିନ୍ତୁ ଗୃଦ୍‌ର ଜନ୍ମପରେ ସେମାନଙ୍କର ସୁଖର ଦିନ ସରିଗଲା ।

ଗୃଦ୍‌ ଭାରି ଦୁଷ୍ଟ । ସବୁବେଳେ ବେପରୁଆ । ତାର କିଛି ଚିନ୍ତା ନଥାଏ । ସେ ଦୁଃସାହସ କାମ କରିବାକୁ ଭଲପାଏ । ସେ ସ୍କୁଲରୁ ପଳେଇ ଆସି ଝରଣାରେ ପହଁରେ । ସ୍କୁଲରେ ମାଷ୍ଟ୍ରଙ୍କୁ ବାଜେପ୍ରଶ୍ନ ପଚାରେ । ଶ୍ରେଣୀରେ ସବୁବେଳେ ଗଣ୍ଡଗୋଳ କରେ ।

ଏ ସବୁ ଦୋଷପାଇଁ ମାଷ୍ଟ୍ରମାନେ ତାକୁ କଠିନ ଦଣ୍ଡ ଦିଅନ୍ତି । ସ୍କୁଲପରେ ତାକୁ ଅଟକାଇ ରଖନ୍ତି । ଛୁଟି ଦିନରେ ଅନ୍ୟ ପିଲା-ମାନଙ୍କ ସାଙ୍ଗେ ଖେଳିବାକୁ ତାକୁ ମନା ବି କରନ୍ତି । ତଥାପି ମଧ୍ୟ ତାର କେଉଁ କଥାକୁ ଖାତିର ନଥାଏ । ଯେଉଁ କଥାକୁ ସେଇକଥା । ତା'ର ପରିବର୍ତ୍ତନ ହୁଏନାହିଁ ।

ପିଲାଙ୍କର ତ ସବୁ କଥା ଜାଣିବାକୁ ବହୁତ ଆଗ୍ରହ । ତାଙ୍କୁ ଯାହା ମନାକରିବ, ସେମାନେ ଜିଦ୍‌କରି ତାହା କରନ୍ତି । ଯେତେ-ବେଳେ ପିଲାମାନଙ୍କୁ ଗୃଦ୍‌ ସାଥିରେ ନ ମିଶିବାକୁ ଶିକ୍ଷକମାନେ କହିଲେ ଓ ମୁରବିମାନେ ଆକଟ କଲେ, ପିଲାମାନେ ଆହୁରି ବେଶୀ ଗୃଦ୍‌ ସାଙ୍ଗରେ ମିଶିଲେ । ତା'ର ସାଙ୍ଗସାଥୀ ବଢ଼ିଗଲେ । ଅନେକ ତାକୁ ଆଦର୍ଶ କରିନେଲେ । ତାର ସହଚର ବଢ଼ିବାରୁ ସେ ଗୋଟିଏ କ୍ଲବ ଗଢ଼ିଲା ।

କ୍ଲବର ସେ ହେଲା ନେତା । ଏଣିକି କ୍ଲବ ପିଲାଏ ସ୍କୁଲରୁ ଖସିଆସି ପହଁରନ୍ତି । ଘଣ୍ଟାରେ ମାଛମାନେ ଏକାଠି ହେଲାବେଳେ ଗୃଦ୍‌ ତାଙ୍କ କ୍ଲବ ପିଲାଙ୍କୁ ନେଇ ସଭାକରେ । ଶିକ୍ଷକମାନେ ନଈ-ବିଷୟରେ ଯାହା କହୁଛନ୍ତି—ସେଗୁଡ଼ା ବାଜେକଥା ବୋଲି ସେ କହେ ।

ପିଲମାନଙ୍କୁ ଫୁସୁଲାଏ—"ନଈ ଗୋଟିଏ ଭଲ ଜାଗା । ସେଠାରେ ଅନ୍ୟ ମାଛମାନେ ମଜା କରନ୍ତି । ଆମେ ସେଠିକୁ ଗଲେ ମଜା କରିବା । ଏଠିକୁ ଆଉ ଆସିବାକୁ ଇଚ୍ଛା କରିବା ନାହିଁ । ସେଥିପାଇଁ ବୁଢ଼ାମାନେ ଡରୁଛନ୍ତି ।" ଥରେ ଥରେ ସେମାନଙ୍କୁ କହେ—"ସେ ସ୍ଥିର କରିଛି—ଏକୁଟିଆ ସେଠାକୁ ଯିବ । ଯାହାର ଇଚ୍ଛାହେବ, ସେ ତା ସାଥୀରେ ଆସିପାରେ । ଖସି ପଳେଇବାର ବାଟ ମଧ୍ୟ ସେ କରିଛି । ଗୀତ ଯେମିତି ଆରମ୍ଭ ହେବ, ଜଗୁଆଳମାନେ ଗୀତରେ ମଜ୍ଜିବେ । ସେତେବେଳେ ସେ ପଳେଇବ । କେହି ଜାଣି ମଧ୍ୟ ପାରିବେ ନାହିଁ ।"

ପିଲା ମନ ତ, ବୁଲିବାକୁ ସମସ୍ତଙ୍କର ଇଚ୍ଛା । ତେଣୁ ପିଲାପାଳ ତା ସାଙ୍ଗରେ ଯିବାକୁ ବାହାରି ପଡ଼ିଲେ । ଗୃଦ୍ ଯେମିତି କହିଥିଲା, ସେମିତି ଶବ୍ଦରେ ସେମାନେ ଖସି ପଳେଇଲେ ।

ନଈରେ ପଶିପାଇ ସେମାନେ ଏକ ପ୍ରଶସ୍ତ ଜାଗା ପାଇଲେ । ସୁଅ ମୁହଁରେ ପଡ଼ିଯିବାରୁ ସେମାନେ ଜୋର୍‌ରେ ପହଁରି ଯାଉଥିଲେ । ପ୍ରଥମେ ପ୍ରଥମେ ତାଙ୍କୁ ମଜା ଲାଗିଲା । ମନେ ମନେ ଗୃଦ୍‌କୁ ସେମାନେ ପ୍ରଶଂସା କରୁଥିଲେ । କିଛି ସମୟ ଗଲାପରେ ଟିକିଏ ଅଟକିବାକୁ ଇଚ୍ଛାକଲେ ବି ସେମାନେ ଅଟକି ପାରିଲେ ନାହିଁ । ଅନ୍ୟମାନଙ୍କୁ ଦେଖିବାକୁ ଆଗ୍ରହ ଥିଲେ ବି କାହାକୁ ଦେଖିହେଲା ନାହିଁ ।

ନଈ ପାଣି ତ ଗୋଳିଆ । ଦୂରରୁ ପରସ୍ପରକୁ ଦେଖିବା ଦୁରୂହ ତାଙ୍କୁ ସବୁ ଏକା ଏକା ଲାଗିଲା । ସେମାନେ ଅସହାୟ ଅନୁଭବ କଲେ ।

ନଈରେ ସୁଅ ଟାଣ । ଉଜାଣି ଫେରଣାକୁ ଫେରିବାକୁ ଶକ୍ତି ତାଙ୍କର ନଥିଲା । ବହୁ କଷ୍ଟରେ କୂଅ ଆଡ଼କୁ ସେମାନେ ଆଉଜ

ଆସିଲେ । ସେମାନେ ସେଠାରେ ପରସ୍ପରକୁ ଭେଟିଲେ । ଦୁଃଖ ସୁଖ ହେଲେ । ସେମାନଙ୍କ ଅନୁଭୂତି ଏକା ବୋଲି ଜାଣିଲେ । ସେମାନେ ବହୁତ ଦୂରକୁ ଚାଲି ଆସିଛନ୍ତି ଓ ଆଉ ଫେରିବାର ବାଟ ନାହିଁ ବୋଲି ମଧ୍ୟ ଜାଣିଲେ । ତାଙ୍କ ଭିତରୁ ପାଞ୍ଚଜଣଙ୍କୁ ବଡ଼ମାଛ ଖାଇ ସାରିଥିଲେ । ଏତେବେଳେ ସେମାନେ ବୁଝିଲେ— ଶିକ୍ଷକ ଯାହା କହୁଥିଲେ, ତାହା ସତ୍ୟ ।

ସେ ଯାହାହେଉ, ତାଙ୍କୁ ବୃଦ୍ଧ ବହୁତ ସାହାସ ଦେଲା । କୂଳରେ ରହିବା ଭଳି ଗୋଟିଏ ଜାଗା ଖୋଜି ବାହାର କଲା । ସାଙ୍ଗମାନଙ୍କୁ ସାଥିରେ ଧରି ନଈ ଭିତରୁ ବୃଦ୍ଧ ସେଠାକୁ ଚାଲି ଆସିଲା । ପିଲାମାନେ ସେଠି ପହଞ୍ଚି ଟିକେ ବିଶ୍ରାମ ନେଲେ ।

ପରସ୍ପରକୁ ଯେତେବେଳେ ସେମାନେ ଦେଖିପାରିଲେ— ସେମାନେ ଜାଣିଲେ ଯେ, ତାଙ୍କ ଭିତରୁ ଏଗାରଟି ହଜିଯାଇଛନ୍ତି । ବୃଦ୍ଧ ତେବେ ବି ନିଜ୍ୟକୁ ନେତାପରି ଅଭିନୟ କରି ବକ୍ତୃତା ଦେଲା-"ବାହାରକୁ ଆସିଲେ ସାବଧାନ ହୋଇ ଚଳିବାକୁ ହେବ । ଅସାବଧାନ ହେଲେ ଝଟକେ ମରିବ । ଏଇ ଏଗାର ଜଣଙ୍କ ଏଥିପାଇଁ ଦାୟୀ । ତମେ ଚିନ୍ତା କରନାହିଁ । ଯଦି ଝରଣାକୁ ଯିବାକୁ ଚାହିଁ, ମୁଁ ତମକୁ ନେଇଯିବି । ରାତିଟା ଏଠି କଟେଇ- ଦେବା । ଦିନ ହେଲେ, ମୁଁ ଠିକ୍ ବାଟ ଦେଖେଇ ଝରଣାରେ ପହଞ୍ଚାଇ ଦେବି ।"

ବୃଦ୍ଧ କଥାରେ ରାଜି ନ ହେବା ଛଡ଼ା ସେମାନଙ୍କର ଅନ୍ୟ କିଛି ଉପାୟ ନଥିଲା । ପହଁରି ପହଁରି ସେମାନେ ଏତେ କ୍ଲାନ୍ତ ହୋଇ ଯାଇଥିଲେ ଯେ ସାଙ୍ଗେ ସାଙ୍ଗେ ସେମାନଙ୍କୁ ନିଦ ହୋଇ- ଗଲା । ସେମାନେ ବି ସକାଳେ ଜଲଦି ଉଠିପାରିଲେ ନାହିଁ ।

ଯେଉଁଠି ଲୁଚିଥିଲେ—ସେଇଟା ନଈର ଫୁକାର । ହଠାତ୍ ଫୁକାର ଖୋଲିଗଲା । ପାଣି ଗର୍ଜନ କରି ବିଲକୁ ଚାଲିଲା । ଗୋଟାଏ

ଭୟାନକ ଶବ୍ଦରେ ମାଛମାନଙ୍କର ନଦ ଶୁଙ୍କିଗଲା । ଉଠିପଡ଼ି ସେମାନେ ଶବ୍ଦଟା କ'ଣ ବୋଲି ଜାଣିବାକୁ ଚେଷ୍ଟା କଲାବେଳକୁ ଦେଖିଲେ—ଭୁସ୍ ଭୁସ୍ ହୋଇ ମାଡ଼ି ଯାଉଥିବା ପାଣି ସାଥିରେ ସେମାନେ ଭାସି ଯାଉଛନ୍ତି ।

ମାଛଗୁଡ଼ିକ ଧାନ କ୍ଷେତରେ ପଶିଗଲେ । ଅଳ୍ପ ସମୟ ପରେ ଫୁତ୍କାର ପୁଣି ବନ୍ଦ ହୋଇଗଲା । ସୁଅ ବି କମିଆସିଲା । ଆସ୍ତେ ଆସ୍ତେ ପାଣି ସ୍ଥିର ହୋଇଗଲା ।

ଗୁଦ୍ ପୁଣି ସମସ୍ତଙ୍କୁ ଡାକି ଏକାଠି କଲା । ସମସ୍ତଙ୍କର ଚିନ୍ତା ସେଠୁ କେମିତି ଝରଣାକୁ ଫେରିଯିବେ । ଉଦ୍ଧାରର ବାଟ ଦେଖିବାକୁ କେତେକ ବାହାରିଲେ । କିନ୍ତୁ ଆଉ କୌଣସି ବାଟ ନଥିଲା । ସମସ୍ତେ ସବୁଆଡ଼ୁ ଫେରିଆସି ଏକାଠି ହେଲେ । ଏଥର ଗୁଦ୍ ବି ଡରିଗଲା ।

ସେ ସ୍ୱୀକାର କଲା –"ମୁଁ ଭାରି ବୋକାମି କଲି । ତମ-ମାନଙ୍କୁ ବିପଦରେ ପକାଇଲି । ସେଥିପାଇଁ ମୁଁ ଦୁଃଖିତ । ତମେମାନେ ମତେ କ୍ଷମାଦିଅ ।"

ତା ପରେ ସେ ମୁଣ୍ଡନୁଆଁଇ ପ୍ରାର୍ଥନା କଲା । ହଠାତ୍ ସେଠି ଗୋଟିଏ ବଡ଼ ଧଳାମାଛ ପହଞ୍ଚିଲା । ଗୁଦ୍ ଓ ତାର ସାଙ୍ଗମାନେ ସେ ମାଛଟିକୁ ଦେଖି ଡରିଗଲେ । ତାପରେ ସେ ଧଳାମାଛଟି କହିଲା—"ଅବିଶ୍ୱାସୀ ପିଲାଏ ! ଶୁଣ, ତମେ ଧାନ କ୍ଷେତରେ ପଡ଼ି ଦଣ୍ଡ ପାଉଛ । କିନ୍ତୁ ତମେମାନେ ମରିବ ନାହିଁ । ତମେ ଓ ତମର ପିଲାମାନେ ଏଇ ଧାନ କ୍ଷେତରେ ଏଣିକି ରହିବ । ତମେ ଅନ୍ୟମାନଙ୍କ ପରି ଦେଖାଯିବ ନାହିଁ ।" ଏହା କହିଁ ସେ ଧଳା-ମାଛଟି ଚାଲିଗଲା ।

ଏକ ନୂତନ ଅନୁଭୂତିରେ ଗୁଦ୍ ଓ ତାର ସାଙ୍ଗମାନେ ଶିହରି ଉଠିଲେ । ସେମାନେ ଅନୁଭବ କଲେ—ତାଙ୍କ ଦେହରେ

ଗୋଡ଼ ଲଗିଛି । ଅକ୍ଳେଶରେ ସେମାନେ ଗ୍ଳଲ ପାରୁଛନ୍ତି ଓ ଦୌଡ଼ି ପାରୁଛନ୍ତି । ଅନ୍ୟମାନଙ୍କପରି ଡମେ ଦେଖାଯିବ ନାହିଁ ବୋଲି ଯାହା ଧଳା ମାଛ କହୁଥିଲି, ତାହା ଠିକ୍ । ସେମାନେ ସେଇ ବନଠାରୁ ଅଲଗା ରହିବାକୁ ଶିଖିଲେ ।

ବିଲରେ ଧାନ ବଢ଼ିବାରୁ ପାଣି ପଙ୍କୁଆ ହୋଇଯାଏ । ପଙ୍କ ପାଣିରେ ସେମାନେ ଅଭ୍ୟସ୍ତ ହୋଇଗଲେ । ଆନନ୍ଦରେ ସେମାନେ ବିଲରେ ରହନ୍ତି । ଯେତେବେଳେ ପାଣି ଶୁଖିଯାଏ ସେମାନେ ଉପରକୁ ଉଠି ଆସନ୍ତି । ଗ୍ଳରିଆଡ଼େ ବୁଲି ନୂଆ ଧାନକ୍ଷେତ ଖୋଜନ୍ତି । ଯେଉଁଠି ପାଣି ଥାଏ ସେଠାକୁ ପଳାଇ ଯାଆନ୍ତି । ସବୁ ଜମିରୁ ଯେତେବେଳେ ପାଣି ଶୁଖିଯାଏ, ସେମାନେ ପଙ୍କରେ ପଶି ମାଟିତଳେ ରହି ଯାଆନ୍ତି । ପୁଣି ବର୍ଷା ପାଣି ଆସିବା ପର୍ଯ୍ୟନ୍ତ ଅପେକ୍ଷା କରନ୍ତି ।

ଅଳ୍ପେ ଅଳ୍ପେ ଚଲିମାଛ ସଂଖ୍ୟା ବହୁତ ବଢ଼ିଗଲା । ଏବେ ବି ସେମାନେ ଭିଏତ୍ନାମ ଧାନକ୍ଷେତରେ ରହନ୍ତି । ଏ ମାଛ ଖାଇବାକୁ ଭାରି ସୁଆଦ । ସେଥିପାଇଁ ନୂଆ ହୋଇ ବର୍ଷା ପାଣି ଆସିଲେ କୃଷୀ ବ୍ୟସ୍ତ ହୋଇପଡ଼େ । ତାର ଚିନ୍ତା କେମିତି କାମ ସାରିବ, କ୍ଷେତକୁ ଯାଇ ଚଲିମାଛ ଧରିବ ।

କଥା ନ ମାନିଲେ ବିପଦ ପଡ଼ିବ । ଶେଷକୁ ଶ୍ରେଷ୍ଠ ମାଛ ମାନଙ୍କ ଭଲ ଅବସ୍ଥା ହେବ ବୋଲି ଭିଏତ୍ନାମର ଲୋକ-ମାନେ କହନ୍ତି ।

— — —

# ଘରଚଟିଆ

ଭିଏତ୍‌ନାମର ଚଢ଼େଇସବୁ ପ୍ରାୟ ସୁନ୍ଦର । କାହାର ଡେଣା ଚକ୍ ଚକ୍ ତ କାହାର ଡେଣା ଚିତ୍ର ବିଚିତ୍ରରେ ଭରା । ସେମାନଙ୍କ କଣ୍ଠ ପୁଣି ସୁମଧୁର । ମନଭୁଲାଣିଆ ଗୀତ ସେମାନେ ଗାଆନ୍ତି ।

ତା'ର କିନ୍ତୁ ବ୍ୟତିକ୍ରମ ଘରଚଟିଆ । ଛୋଟ ଚଢ଼େଇଟିଏ । ରଙ୍ଗ ତା'ର ମାଟିଆ । ଅଙ୍ଗରେ କଳାଦାଗ । ତା ଡାକରେ ନାହିଁ ଲାଳିତ୍ୟ କି ନାହିଁ ମଧୁରତା । କଣ୍ଠ ତା'ର ବିରକ୍ତିକର । ସେ ଗୀତ ବି ଗାଏ ନାହିଁ । ଖାଲି ଚେଁ, ଚେଁ ହୁଏ ।

କଥିତ ଅଛି – ଆଗେ ସେମାନେ ସେମିତି ନ ଥିଲେ । ଅନ୍ୟ ପକ୍ଷୀମାନଙ୍କ ପରି ସେମାନେ ବି ସୁନ୍ଦର ଥିଲେ । ତାଙ୍କ ଡେଣା ମଧ୍ୟ ରଙ୍ଗ ବେରଙ୍ଗରେ ଭରିଥିଲା । ସେଗୁଡ଼ିକ ଚକ୍ ଚକ୍ କରୁଥିଲା । ଅଙ୍ଗରେ କଳାଦାଗ ନଥିଲା । ସେମାନେ ମଧ୍ୟ ମଧୁର ଗୀତ ଗାଉଥିଲେ ।

ଅନାଦିକାଳରୁ ମଣିଷ ସହିତ ପକ୍ଷୀଙ୍କର ସମ୍ପର୍କ ଅତି ନିବିଡ଼ । ମଣିଷ ଫସଲ କରେ । କୀଟପତଙ୍ଗ ସେହି ଫସଲକୁ ନଷ୍ଟ କରନ୍ତି । ସେମାନେ ମଧ୍ୟ ରୋଗର ବାହକ । ମଣିଷ କୀଟପତଙ୍ଗଦ୍ୱାରା ବ୍ୟାଧି-ଗ୍ରସ୍ତ ମଧ୍ୟ ହୁଏ । ପକ୍ଷୀମାନେ ସେଇ କୀଟ ପତଙ୍ଗଙ୍କୁ ଖାଇ ଫସଲ ତ ରକ୍ଷା କରନ୍ତି । ମଣିଷକୁ ରୋଗମୁକ୍ତ ମଧ୍ୟ କରନ୍ତି । ତେଣୁ ପକ୍ଷୀ ମଣିଷର ଉପକାରୀ ବନ୍ଧୁ ।

ପୂର୍ବେ କୃଷୀମାନେ ଏଇ ପକ୍ଷୀଙ୍କ ଯୋଗୁ ଭଲ ଶସ୍ୟ ଉତ୍ପାଦନ କରୁଥିଲେ । ଆନନ୍ଦରେ ବର୍ଷ ସାରା ଚଳୁଥିଲେ । ପ୍ରାୟ ରୋଗ ବି

ଭୋଗୁନଥିଲେ । ପ୍ରଚୁର ଫସଲ ଉତ୍ପାଦନ ହେବାରୁ ସବୁପ୍ରାଣୀଙ୍କର ମଧ୍ୟ ଖାଦ୍ୟ ଅଭାବ ନ ଥିଲା । ସେମାନେ ବି ଖୁସିରେ ରହୁଥିଲେ ।

ପକ୍ଷୀମାନେ ଗୋଷ୍ଠିଆ ପ୍ରାଣୀ । ତେବେ ବି ସେମାନଙ୍କର ସମାଜ ଅଛି । ଏକତା ଅଛି । ସେମାନେ ପ୍ରାୟ ଏକାଠି ବସା ବାନ୍ଧନ୍ତି । ଶୋଇବାକୁ ଯିବାପୂର୍ବରୁ, ସେଥି ମାଡ଼ରେ ଥାଇ ବି ପରସ୍ପର ଭିତରେ କଥାବାର୍ତ୍ତା ହୁଅନ୍ତି । ଦିନରେ କ'ଣ କ'ଣ ଘଟିଲା, ଆଉ ଯାହାସବୁ ଦେଖିଲେ, ସେଇ ବିଷୟରେ ଆଲୋଚନା ହୁଏ । ତାପରେ ସେମାନେ ଗୀତଗାଇ ଶୋଇପଡ଼ନ୍ତି ।

ସେମାନଙ୍କର ସଭା ହୁଏ । ସବୁ ପକ୍ଷୀ ସେ ସଭାର ସଭ୍ୟ । ଚଢ଼େଇ ଭିତରେ ପେଚା ହେଉଛି ସବୁଠାରୁ ଜ୍ଞାନୀ । ସେମାନଙ୍କ ସଭାର ସେ ସଭାପତି ! ପକ୍ଷୀମାନଙ୍କର ସମସ୍ୟା ତ କିଛି ନଥିଲା । ତେଣୁ ସଭାରେ ବଡ଼ଧରଣର ଆଲୋଚନା ପ୍ରାୟ ହୁଏନାହିଁ । ବିଚାରକରି କାହାକୁ ଦଣ୍ଡ ଦେବାର ପ୍ରଶ୍ନ କେବେହେଲେ ଉଠେ ନାହିଁ ।

ଗୋଟିଏ ସନ୍ଧ୍ୟାର କଥା । ସଭାର ସବୁ ପକ୍ଷୀମାନେ ଫୁସ୍‌ଫାସ୍ ହେଉଥାଆନ୍ତି । ବୁଢ଼ା ପେଚାଟି ବଡ଼ ପାଟିରେ ସେମାନଙ୍କୁ ନୀରବତା ରକ୍ଷା କରିବାକୁ କହିଲା । ସେମାନେ ଚୁପ୍ ରହିଲେ ପରେ ପେଚା କହିଲା—"ସାଥୀ ପକ୍ଷୀଗଣ ! ଦୁଃଖର ସହିତ ମୁଁ କିଛି ଦୁଃସମ୍ବାଦ ଦେଉଛି । ଅସ୍ଥିର ହୁଅନାହିଁ । ମନଦେଇ ଶୁଣ । ଆଜି ଶସ୍ୟାଗାର ପାଖରେ ଥିବା ଗଛକୁ ମୁଁ ଯାଇଥିଲି । ସେଠାରେ ବହୁତ ଲୋକ ଜମା ହୋଇଥିଲେ । ସେମାନେ ସେଠି କଣ ସବୁ ଆଲୋଚନା କରୁଥିଲେ । ବାତାବରଣରୁ ଜାଣିଲି, ତାହା ବଡ଼ ଗୁରୁତର । ମୁଁ ଟିକେ ପାଖକୁ ଉଡ଼ିଗଲି । ମନଦେଇ ସେମାନଙ୍କ କଥା ଶୁଣିଲି । ଅବଶ୍ୟ ତାଙ୍କ କଥାରୁ କିଛି ଠଉରେଇ ପାରିଲିନାହିଁ । ଦେଖିଲି— ସେମାନେ ଉତ୍ତ୍ୟକ୍ତ ।"

ପକ୍ଷୀମାନେ ପୁଣି ଚୁପ୍‌ଚାପ ହେଲେ । ଜଣେ ଅନ୍ୟ ଜଣଙ୍କୁ କହିଲା "ସେମାନେ ଆଜ ଗୋଟିଏ ଶସ୍ୟାଗାର କରୁଛନ୍ତି । ଅନ୍ୟଟି ନ ହିଁ କଲା । ପ୍ରଥମଟି ବାଜ ମାରିବା ଲାଗି ଆହ୍ୱାନ ଦେଲା । ଅନ୍ୟ ଜଣକ କହିଲା, ଶସ୍ୟଗୁଡ଼ିକ ଏଠି ନଷ୍ଟ ହୋଇ ଯାଉଛି, । ଶସ୍ୟାଗାର ନ କରି ଉପାୟ ନାହିଁ ।

ନିଜ ନିଜ ଭିତରେ ଆଲୋଚନା ହୋ ହା ରେ ପରିଣତ ହେଲା । ସେଇଟି ଅଜଥରେ ନୀରବତା ରକ୍ଷାପାଇଁ ଆହ୍ୱାନ କଲା । ସମସ୍ତେ ପୁଣି ଚୁପ୍ ହୋଇଗଲେ । ସେଇ କଥା ଶୁଣିବାପାଇଁ ସମସ୍ତେ ଆଗ୍ରହରେ କାନ ଡେରିଲେ ।

ସେଇ କହିଲା 'ଯାହା ଜଣାଯାଉଛି, ଶସ୍ୟାଗାରରୁ ଶସ୍ୟ ଶୀଘ୍ର ସରିଆସୁଛି । ଲୋକମାନଙ୍କର ବିଶ୍ୱାସ, କିଏ ଚୋରି କରୁଛି । ସେମାନେ ଜଗିଛନ୍ତି । ସହରରେ ତ କୌଣସି ବାହାର ଲୋକ କି ପଶୁକୁ ସେମାନେ ଦେଖୁନାହାନ୍ତି । ଯେ ଅଛନ୍ତି, ତାଙ୍କ ପିଚ୍ଛରେ ଲୋକ ଲଗାହେଲା । ଦେଖାଗଲା ଯେ ଲୋକମାନେ କି ପଶୁମାନେ ଶସ୍ୟାଗାରରୁ ଚୋରି ଯାଉଥିବା ଖାଦ୍ୟ ସହିତ ସଂପୃକ୍ତ ନୁହନ୍ତି । ତେଣୁ ଆମେ ଚଢ଼େଇମାନେ ଏସବୁ ନେଉଛୁ ବୋଲି ସେମାନଙ୍କର ଧାରଣା "

ସବୁ ପକ୍ଷୀମାନେ ପ୍ରତିବାଦ କରି କଚିରମିଚିର ହେଲେ । ସେମାନେ ଶୁଣୁଥିବା କଥାକୁ ବିଶ୍ୱାସ କରିପାରିଲେ ନାହିଁ । ସେମାନେ ଭାବିଲେ --ପ୍ରକୃତରେ ତାଙ୍କ ଭିତରୁ କେହି ଦୋଷୀ ନୁହନ୍ତି । ଚୋରି କରିବାର ଆବଶ୍ୟକତା ତାଙ୍କର ନାହିଁ । ଲୋକମାନେ ତାଙ୍କୁ ଭୁଲ୍ ବୁଝୁଛନ୍ତି ।

ସେଇ କହିବାକୁ ଲାଗିଲା—"ତମମାନଙ୍କ ଭିତରୁ ଯଦି କିଏ ଦୋଷୀ ଅଛ, ଫିଟାଇ କୁହ । ପ୍ରକୃତରେ ଏହା ଏକ ଗୁରୁତର କଥା । ଏହା ଆମ ଜୀବନମରଣ ସମସ୍ୟା । ଲୋକମାନେ ପକ୍ଷୀ-

ମାନଙ୍କୁ ଦୋଷୀ ବୋଲି ଧରି ନେଇଛନ୍ତି । ତେଣୁ ଆମକୁ ଧ୍ୱଂସ-କରିବାକୁ ସ୍ଥିର କରିଛନ୍ତି ।”

ଏହା ଶୁଣି ପକ୍ଷୀମାନେ ଡରିଗଲେ । ହୁଁ କି ନାଁ କିଛି ହେଲେ ନାହିଁ । ଘରିଆଡ଼ ମାରିବ, ନସ୍ତନାବୁଧ ।

ପେଚା ଘୋଷଣା କଲା—“ସମସ୍ତେ ଆଜି ବଡ଼ କ୍ଲାନ୍ତ । ବହୁତ ଡେରି ବି ହେଲଣି । ଆଜିର ସଭା ଭଙ୍ଗ ହେଉ । କାଲି ସକାଳେ ପୁଣି ସମସ୍ତେ ଏକାଠି ବସିବା । କ’ଣ କରିବାକୁ ହେବ, ସ୍ଥିର କରିବା ।”

ପରଦିନ ସକାଳେ ପୁଣି ସଭା ଆରମ୍ଭ ହେଲା । ପ୍ରତ୍ୟେକ ସଭ୍ୟ ନିଜ ନିଜ ଆସନ ଗ୍ରହଣ କଲେ । ତାପରେ ସଭାପତି ପେଚା ଗମ୍ଭୀର ଭାବରେ କହିଲା—“ଆମେ ଲୋକମାନଙ୍କ ସାଙ୍ଗରେ ଓ ପଶୁଙ୍କ ସାଙ୍ଗରେ ସବୁବେଳେ ଶାନ୍ତିପୂର୍ଣ୍ଣ ଭାବରେ ରହିଆସିଛୁ । ଆମପାଇଁ ତିଆରି ହୋଇଥିବା ନିୟମ ଆମେ ଅମାନ୍ୟ କରିନାହୁଁ । ବର୍ତ୍ତମାନ ଆମର ବିପଦ ସମୟ । ଅବଶ୍ୟ ଆମ ଭିତରୁ କେହି ଦୋଷୀ ବୋଲି ପ୍ରମାଣ ନାହିଁ । ମିଛରେ କୁଏଡ କିଏ କ’ଣ କହିଥାଇପାରେ ।”

ତାପରେ ସେ ଟିକେ ରହିଯାଇ ପୁଣି କହିଲା—“ଯେହେତୁ ଆମ ସଭ୍ୟମାନେ ଏସବୁ ବିଷୟରେ କିଛି ଜାଣି ନାହାନ୍ତି, ତେଣୁ ଲୋକମାନଙ୍କୁ ଆମେ ଜଣେଇଦେବା ଉଚିତ୍ ଯେ, ଆମେ ଏଥିରେ ସଂପୃକ୍ତ ନୁହଁ ।”

ପକ୍ଷୀମାନେ ସବୁଓ ଚୁପ୍‌ଚାପ୍ ହୋଇ ବସିଥିଲେ, ତଥାପି ପରସ୍ପରକୁ ଆଶ୍ଚର୍ଯ୍ୟାନ୍ୱିତ ଭାବେ ଅନାଉଥିଲେ । ସେମାନେ ଏପରି ଭାବରେ ପରସ୍ପରକୁ ଚାହିଁଥାନ୍ତି ଯେ, ମନେହେଲା ସତେ ଯେପରି ପ୍ରତ୍ୟେକେ ନିଜ ପାଖ ପକ୍ଷୀକୁ ସନ୍ଦେହ କରୁଛି ।

ପେଚ୍କ ବସି ବସି ଏ ସବୁ ଲକ୍ଷ୍ୟ କରୁଥାଏ । ଏହିପରି ପକ୍ଷୀ-ମାନଙ୍କର ବଦଳନ୍ତ ଭାବ ଦେଖି ସେ କହିଲା—"ତୁମମାନଙ୍କ ଭିତରୁ କାହାର କିଛି କହିବାର ଅଛି କି କୁହ ?"

କାଉ ତା ତେଣା ଝାଡ଼ିଝୁଡ଼ିଦେଇ କହିଲା—"ଆମେ ଦୋଷୀକୁ ଧରିବାକୁ ଶଯ୍ୟାଗାର ପହରାଦେଇ ଜଗିରହିବା ପାଇଁ ମୁଁ ପ୍ରସ୍ତାବ ଦେଉଛି ।"

ଅନେକ ପକ୍ଷୀ ଏ କଥାକୁ ସମର୍ଥନ କଲେ । କାଉର ପ୍ରସ୍ତାବକୁ ସବୁପକ୍ଷୀଙ୍କର ପସନ୍ଦ । ତେଣୁ ପ୍ରତ୍ୟେକ ସଭ୍ୟ ଶଯ୍ୟାଗାରର ଗୋଟିଏ ଗୋଟିଏ ଦୁଆର ଦୁଇଘଣ୍ଟା ଧରି ଜଗିବାର ଦାୟିତ୍ୱ ନେଲେ ।

ସଭା ଭାଙ୍ଗିଲା । ଯେଉଁମାନଙ୍କର ଜଗିବାର ଦାୟିତ୍ୱ ଥିଲା ସେମାନେ ତାଙ୍କ କାମ ଠିକ୍ ମୁତାବକ କରିସାରି ନିଜ ଜାଗାକୁ ଫେରି ଯାଉଥିଲେ ।

ଇତି ମଧ୍ୟରେ ସପ୍ତାହଟିଏ କଟିଗଲା । ସେପରି କିଛି ଅପ୍ରୀତି-କର ଘଟଣା ସେମାନଙ୍କ ନଜରକୁ ଆସିଲା ନାହିଁ ।

ଶଯ୍ୟଚୋରି କିନ୍ତୁ ବନ୍ଦ ହେଲାନାହିଁ । ଅବଶ୍ୟ ସବୁବେଳେ ଚୋରି ହେଲା ନାହିଁ । ମଝିରେ ମଝିରେ ଚୋରି ହୁଏ । କିନ୍ତୁ ଚୋର ଧରାପଡ଼ିଲା ନାହିଁ ।

ପକ୍ଷୀମାନଙ୍କ ଭିତରେ ଅବିଶ୍ୱାସ ଖୁବ୍ ବଢ଼ିଲା । ପ୍ରତ୍ୟେକ ପ୍ରତ୍ୟେକଙ୍କୁ ସନ୍ଦେହ କଲେ ।

ପେଚ୍କ କାହାକୁ କିଛି ନକହି ନିଜେଯାଇ ଜଗୁଆଳଙ୍କୁ ଜଗିଲା । ଗୋଟିଏ ଜାଗାରେ ଘରଚଟିଆ ଜଗିଥାଏ । ପେଚା ପାଖ ଆଡ଼ୁଆଳରେ ଜଗି ବସିଥାଏ । ଦଳେ ଘରଚଟିଆ ଏକାଠି ଶଯ୍ୟା-ଗାର ଭିତରକୁ ଗଲେ । ଥଣ୍ଟରେ ଧାନନେଇ ଉଡ଼ିଗଲେ ।

ଘରଚଟିଆମାନେ ତାଙ୍କ କାମସାରି ଚାଲିଗଲେ । ତା ପରେ ମାଛରଙ୍କା ଆସିଲା । ଘରଚଟିଆମାନେ ଯିବାବେଳେ କହିଗଲେ "ଏ ଜଗିବାରେ କେବଳ ସମୟ ନଷ୍ଟ । ଏହା ଏକ ବୋକାମୀ । ଏ ପ୍ରହସନ ବନ୍ଦ କରିଦେବା ଉଚିତ ।" ମାଛରଙ୍କା ସେଥିରେ ଏକମତ ।

ପରଦିନ ସକାଳେ ସଭା ବସିଲା । ପେଚା କହିଲା—"ଆମେ ତ ଏତେ ଜଗିଲୁ । ଚୋରିହେଲା । କିନ୍ତୁ ଆମେ କିଛି ଜାଣିପାରିଲୁ ନାହିଁ । ତେଣୁ ଜଗିବା କେବଳ ପ୍ରହସନହୋଇଗଲା, ତାହା ବନ୍ଦ କରାଯାଉ । ମୁଁ ପାହାଡ଼ ଉପରକୁ ଯାଇ ଭଗବାନଙ୍କୁ କହିବି ଯାହା ଆମେ ଶିଖିଲୁ, ତା ମଧ୍ୟ ତାଙ୍କୁ କହିବି । ଆମକୁ ଆଘାତ ଦେବାକୁ ତାଙ୍କୁ ମନା କରିବି ।"

ଏହା କହି ପେଚା ପାହାଡ଼ ଉପରକୁ ଉଡ଼ିଗଲା । ଅନ୍ୟ ପକ୍ଷୀମାନେ ତାଙ୍କ ସାଙ୍ଗମାନଙ୍କ ସହିତ ଉଡ଼ି ଚାଲିଗଲେ ।

ପାହାଡ଼ରୁ ଫେରି ପେଚା ସରପଞ୍ଚଙ୍କ ପାଖକୁ ଗଲା । ସେ ଦୋଷୀକୁ ଜାଣିଥିଲା । କିନ୍ତୁ କାହାରିକୁ କହି ନ ଥିଲା । କାରଣ ବିନା ପ୍ରମାଣରେ ଦୋଷ ଦେଲେ, କେହି ବିଶ୍ୱାସ କରିବେ ନାହିଁ । ବରଂ ହସି ଉଡ଼ାଇଦେବେ । ତେଣୁ ଦୋଷୀକୁ ଧରିବାକୁ ସେ ଗୋଟିଏ ଉପାୟ ପାଞ୍ଚିଲା ।

ସରପଞ୍ଚଙ୍କୁ ସେ ଉପାୟଟି କହିଲା । ସେ କହିଲା—'ମୁଁ ବିନା ପ୍ରମାଣରେ ଚଟିଆକୁ ଦୋଷୀ କରିବି ନାହିଁ । ତେଣୁ ମୁଁ ଭଗବାନଙ୍କ ନିକଟରୁ ମ୍ୟାଜିକ୍ ପାଉଡ଼ର ଆଣିଛି । ତାକୁ ମୁଁ ଶସ୍ୟାଗାର ଉପରେ ବିଞ୍ଚିଦେଇଛି । ଚଟିଆମାନେ ଯେତେବେଳେ ଚୋରି କରିବାକୁ ଯିବେ ସେ ପାଉଡ଼ର ତାଙ୍କ ପର ସହିତ ଅଣ୍ଟାରେ ଭଲ ଭାବରେ ଲାଗିଯିବ । ତେଣୁ ସେମାନେ ଚୋର ବୋଲି ଜଣାପଡ଼ିବେ । ଆଜି ସଂଧ୍ୟାରେ ପକ୍ଷୀମାନେ ଏକାଠି ହେଲେ ମୁଁ

ତାଙ୍କୁ ଏଇକଥା କହିବ । ତେଣୁ ଲୋକେ ଜାଣିବେ ଯେ, ଚଟିଆମାନେ ଦୋଷୀ । ଯଦି ସେମାନେ ଦୁର୍ଦାନ୍ତ, ତାଙ୍କୁ ହିଁ କେବଳ ସେମାନେ ଦଣ୍ଡ ଦେବେ ।"

ସେହି ସନ୍ଧ୍ୟାରେ ପକ୍ଷୀମାନେ ଏକାଠି ହେଲେ । ପେଚା ତାଙ୍କୁ ନୀରବ ହେବାକୁ କହିଲା । ଯାହା ଘଟିଥିଲା, ତା ମଧ୍ୟ କହିଲା । ତାପରେ ସେ ମ୍ୟାଜିକ୍ ଶବ୍ଦ କହିଲା "ହୋଗୁଲବାଟଟୁ" ତାର ଅର୍ଥ ହେଲା "ଆରମ୍ଭର ସମୟ ହେଲା ।"

ସେ ଯେତେବେଳେ ଏହା କହିସାରିଲା-"ପୁରୁଷ ଚଟିଆର ଥଣ୍ଟରେ କଳାଦାଗ ବୁଲିଗଲା । ସବୁ ଚଟିଆ ତାଙ୍କର ସୁନ୍ଦର ରଙ୍ଗ ଭୁଲି ମାଟିଆ ରଙ୍ଗ ହୋଇଗଲେ ।

ତାପରେ ପେଚା କହିଲା—"ଚଟିଆମାନେ, ତମେ ମିଥ୍ୟାବାଦୀ । ଚୋର । ତମେ ଆମ ପକ୍ଷୀ ଜାତିର କଳଙ୍କ । ଲୋକଙ୍କ ଆଗରେ ତମେ ଶସ୍ୟଚୋର ବୋଲି ପରିଚିତ ହେବ । ଏଣିକି ତମେ ଆଉ ସୁନ୍ଦର ଗୀତଗାଇ ପାରିବ ନାହିଁ । ତମ ଥଣ୍ଟରେ କଳାଦାଗ ରହିଯିବ । ତମ ପର ମାଟିଆ ହୋଇ ରହିବ ।"

ନିଜର ରଙ୍ଗ ଓ ପୁରୁଷଙ୍କ ଥଣ୍ଟରେ କଳାଦାଗ ଦେଖି ଚଟିଆ-ମାନେ, ଭୟଭୀତ ହୋଇ ସେଠୁ ପଳାଇଲେ । ସେମାନେ ସେଇଦିନୁ ଦଳବଦ୍ଧ ହୋଇ ରହିଲେ । ଅନ୍ୟ ପକ୍ଷୀମାନଙ୍କ ପାଖକୁ ସେମାନେ ଆଉ ଯାଆନ୍ତି ନାହିଁ । ସେମାନଙ୍କର ରଙ୍ଗ ହେଲା ମାଟିଆ । କେବଳ ପୁରୁଷ ଚଟିଆର ଥଣ୍ଟରେ କଳାଦାଗ । ପ୍ରକୃତଚୋର ସେ ।

ପୁରୁଷ ଚଟିଆର ଥଣ୍ଟରେ କଳାଦାଗ, ଚଟିଆର ମାଟିଆ ରଙ୍ଗ ଆମକୁ ମନେପକାଇଦିଏ ଯେ, ମିଛୁଆ ଓ ଚୋରମାନେ ଦିନେ ନା ଦିନେ ନିଶ୍ଚୟ ଧରାପଡନ୍ତି । କଳଙ୍କ ପରିସ୍ଫୁଟ ହୁଏ । ସେ କଳଙ୍କ ଆଉ ଲିଭେନାହିଁ । ସୁତରାଂ ଚୋରି କଲେ ରକ୍ଷାନାହିଁ ।

# ବାଖୋ

ବୁଢ଼ୀଟି ଗରିବ । ତାର ଗୋଟିଏ ବୋଲି ପୁଅ । ନାଁ ତାର ବାଖୋ । ସ୍ୱଭାବ ତାର ବଡ଼ ଶାନ୍ତ । ଉତ୍ତମ । କାହାର ସେ କିଛି କ୍ଷତି କରେନାହିଁ । କଥା ତାର ମଧୁର । ହୃଦୟସ୍ପର୍ଶୀ । ସମସ୍ତଙ୍କ ସାଥିରେ ମିଶିଯାଏ । ଦ୍ୱନ୍ଦ୍ୱ ସେ ଦୂରରେ । ଚଲ୍ ପାଣିରେ ଗୋଡ଼ ପୂରାଏ ନାହିଁ ।

ସେ ଖୁବ୍ ପରିଶ୍ରମୀ । ମା ସାଥିରେ ବିଲରେ ସେ ଖଟେ । ଯାହା ତାଙ୍କର ଆୟ ସେଥିରେ ଦୁଃଖେ କଷ୍ଟେ ସେମାନେ ଚଳନ୍ତି ।

ହଠାତ୍ ସେ ମୁଲକକୁ ଗୋଟିଏ ରାକ୍ଷସ ଆସିଗଲା । ସେ ଦେଖିବାକୁ ପାହାଡ଼ ଭଳି ବଡ଼ । ରଙ୍ଗ ତାର କଳା । ତାର ବୃଟେଈ ମୁହଁ । ପଞ୍ଝା ନାକ । ବୃରି ବୃରିଠା ମଣିଷକୁ ସେ ଏକା ଥରକେ ମୂଳା ଭଳି ରଡ଼ି ରଡ଼ି କରି ଚୋବାଇ ଖାଇଦିଏ । ଫଳରେ ରାକ୍ଷସର ଭୟରେ ହାହାକାର ପଡିଗଲା । ତା'ର ନାଁ ଶୁଣିଲେ ସମସ୍ତେ ଭୟରେ ଥରନ୍ତି । ଧୀରେ ଧୀରେ ମଣିଷକୁ ଖାଇ ବହୁତ ଗାଁ ସହର ଜନଶୂନ୍ୟ କରିଦେଲା । ଭୟରେ ରାଜା ମଧ୍ୟ ପିଲାଛୁଆ ଧରି ରାଜ୍ୟ ଛାଡ଼ି ପଳାଇଲେ । ଧନୀ ଲୋକ-ମାନେ ବି ଅନ୍ୟ ଦୂର ଜାଗାକୁ ଯାଇ ନିଜର ଜୀବନ ରକ୍ଷା ପାଇଁ ଲୁଚିଲେ । ରାକ୍ଷସ ଏସବୁ ଦେଖି ଭାବିଲା—ସେ ଏବେ ନିର୍ଭୟ । ତେଣୁ ଗୋଟିଏ ମୁଣ୍ଡରୁ ସେ ଲୋକଙ୍କୁ ଖାଇବାକୁ ଲାଗିଲା । ବାଖୋ ଓ ତା ମା ତ ଗରିବ । ତା ଛଡ଼ା ବୁଢ଼ୀଟା ବେଶି ବାଟ ଚାଲିବାକୁ ଅକ୍ଷମ । ସେଥିପାଇଁ ସେମାନେ ଅନ୍ୟ ମୁଲକକୁ ଯାଇ-

ପାରିଲେ ନାହିଁ । ସେମାନେ ରାଜ୍ୟକୁ ଆଦରି ସେଠାରେ ରହିଲେ ।

ଏଥର ତାଙ୍କୁ ରାକ୍ଷସ ଖାଇବାର ସମୟ ଆସିଗଲା । ଏହା ଦେଖି ବିଚରା ବୁଢ଼ୀ ଗ୍ଭନଥା । ଡ଼ରରେ ଥରହର । ନିଜ ପୁଅକୁ ଜାଣି ଜାଣି କପରି ରାକ୍ଷସ ମୁହଁକୁ ଠେଲି ଦେବ, ସେଇଟା ତାର ବଡ଼ ଚିନ୍ତା । ସେ ଭାବିଲା—ସେ ନିଜେ ଯିବ । ରାକ୍ଷସର ଖାଦ୍ୟ ହେବ । ପୁଅକୁ ଛାଡ଼ିଦେବାକୁ ରାକ୍ଷସକୁ ପ୍ରାର୍ଥନା କରିବ । ପୁଣି ଭାବିଲା—ରାକ୍ଷସ କ'ଣ କାହା କଥା ଶୁଣେ ଯେ ତା କଥା ଶୁଣିବ । କିନ୍ତୁ ବାଘୋର ତ ଭାରି ଜିଦ୍‌ଖୋର । ସେ ନିଜ ବଦଳରେ ବୁଢ଼ୀମାକୁ ପଠାଇବାକୁ ଜମା ରାଜି ନୁହଁ । ମା ପୁଅ ଯେଝା ଜିଦରେ ଅଟଳ । ବେଳ ପାଖେଇ ଆସିବାରୁ ବାଘୋ ମା'କୁ କହିଲା—"ମାର ସେବା କରିବା ପୁଅର କର୍ତ୍ତବ୍ୟ । ତେଣୁ ମୋତେ ତୋତେ ବଞ୍ଚାଇ ରଖିବାକୁ ହେବ । ଅସୁର ପାଖକୁ ଖାଦ୍ୟ ପାଇଁ ପଠାଇବାଟା କ'ଣ ପୁଅର କର୍ତ୍ତବ୍ୟ ହେବ ? କାଲି କାଲିକୁ କଥା ରହିବ ଯେ ଡ଼ରକୁଳି ବାଘୋ ନିଜର ଜୀବନ ରଖିବାକୁ ବୁଢ଼ୀ ମାକୁ ଅସୁରର ଖାଦ୍ୟ କରିଦେଲା । ଏପରି ବଦନାମ ନେଇ ବଞ୍ଚିବା ଅପେକ୍ଷା ମରିଯିବା ଉଚିତ । ତାଛଡ଼ା ମୁଁ ଗଲେ, ଅସୁର ସାଥିରେ ଲଢ଼ିବି । ଜିତିବା ହାରିବା ଭଗବାନଙ୍କ ହାତରେ । ତୁ ଗଲେ ସେ କାମତ କରିପାରିବୁ ନାହିଁ । ତୁ ରହ ମୁଁ ଯାଉଛି ।"

"ପୁଅରେ, ରାକ୍ଷସ ତ ମହାବଳବାନ । ତୁ ତା ସାଥିରେ କପରି ଲଢ଼ିବୁ ?" ଆଶ୍ଚର୍ଯ୍ୟ ହୋଇ ବୁଢ଼ୀ ପ୍ରଶ୍ନ କଲା ।"

"ଯେଉଁପରି ଲଢ଼ିବା ଉଚିତ୍ ସେଇପରି ମୁଁ ଲଢ଼ିବି ।" ବାଘୋର ଥିଲା ମାକୁ ତାର ଉତ୍ତର । ବାଘୋ କଥା ଶୁଣି ବୁଢ଼ୀ

ମନରେ ଅସଂଖ୍ୟ ଦ୍ୱନ୍ଦ । ମର୍ମ ସେ ବୁଝିପାରିଲା ନାହିଁ । ତେଣୁ ପ୍ରଶ୍ନ କଲା—"ରାକ୍ଷସ ତ ବଡ଼ ବଳୁଆ ଓ ଦୁଷ୍ଟ । ତୁ ପିଲା ଲୋକ । ତାଛଡ଼ା ଏକୁଟିଆ । ତୁ ତା ସାଥିରେ କେମିତି ଲଢ଼ିବୁ ?"

"ମା, ତମ ଆଗରେ ମୁଁ ପିଲା । ତେଣୁ ତୁମେ ଶଙ୍କି ଯାଉଛ । ମୁଁ ବେଶ୍ ଲଢ଼ିବାକୁ ସକ୍ଷମ । ତାଛଡ଼ା ସବୁ ବାଘୋ ଯଦି ଏକଜୁଟ ହେବେ, ରାକ୍ଷସକୁ ମାରିବା ଅତି ସହଜ କଥା ହୋଇଯିବ ।" ଏହା ଥିଲା ବାଘୋର ଉତ୍ତର ।

ବୁଢ଼ୀ ପୁଅର ସାହାସ ଦେଖି ଭାରି ଖୁସି । ଆଖିରୁ ଆନନ୍ଦାଶ୍ରୁ ବୋହି ଆସିଲା । ପୁଅକୁ ସେ କୁଣ୍ଢାଇ ପକାଇ କହିଲା—"ଭଗବାନ ତୋତେ ସାହା ହୁଅନ୍ତୁ । ଯେତେ ଅସୁବିଧା ପଡ଼ିଲେ ବି, ସାହାସ ହରାଇବୁ ନାହିଁ । ଯେ ନିଜକୁ ସାହାଯ୍ୟ କରିବାକୁ ବାହାରି ଆସେ, ଭଗବାନ ତାକୁ ସାହାଯ୍ୟ କରନ୍ତି ।"

ତାପରେ ବାଘୋ ମା'ର ଆଶିର୍ବାଦ ନେଇ ଘରୁ ବାହାରି ପଡ଼ିଲା । ଯାଉ ଯାଉ ଗୋଟିଏ ଛକ ପଡ଼ିଲା । ସେ ସେଠାରେ ବସି ଗୋଟିଏ ପଥରରେ ତାର ଦାଢ଼ୁଆ ଛୁରୀକୁ ପୁଣି ଦାଢ଼ କରିବାକୁ ଲାଗିଲା । ସେଇ ବାଟରେ ଜଣେ ବାଟୋଇ ଯାଉଥିଲେ । ବାଘୋର କର୍ମ ଦେଖି ସେ ଅଟକି ଗଲେ । ସେ ପଚାରିଲେ— "ବାଘୋ, ତୁମେ କ'ଣ କରୁଛ ? ତମର ଛୁରୀ ତ ବେଶ ଧାରୁଆ । ତଥାପି ତାକୁ କାହିଁକି ଦାଢ଼ କରୁଚ ?"

ବାଘୋ କହିଲା—"ଏଥିରେ ବଜ୍ରାଙ୍ଗ ଭଳି ଚମକୁ ଥିବା ଦାଢ଼ି ଆଣିବା ପାଇଁ ।"

"ମାଇ କାହିଁକି ?" ଏହା ଥିଲା ସେହି ଲୋକଙ୍କର ପୁଣି ପ୍ରଶ୍ନ । ତାଙ୍କ ମନରେ ଉତ୍କଣ୍ଠା । ଜାଣିବାର ଅଧିକ ଆଗ୍ରହ ।

ବାଘେଖା କହିଲା—"କଳା ରାକ୍ଷାସକୁ ମାରିବା ପାଇଁ ଆପଣ ମୋତେ ସାହାଯ୍ୟ କରିପାରିବେ ?"

ସେଠାରେ ଆସ୍ତେ ଆସ୍ତେ ଲୋକମାନେ ଜୁଟିଲେ । ବାଘେଖାର ଏ କଥା ଶୁଣି ସମସ୍ତେ ଗୁନ୍‌ଥା । ତାଙ୍କର ଭୟ ଏ କଥା ଯଦି ରାକ୍ଷସ କାନରେ ପଡ଼େ ସେ ରାଗିବ । ସମସ୍ତଙ୍କୁ ସେ କଞ୍ଚା ଖାଇ ଏ ମୁଲକକୁ ପୁରାପୁରି ସାଫ କରିଦେବ ।" ସେମାନେ ବାଘେଖାକୁ ପାଗଳା ବୋଲି ସମ୍ବୋଧନ କରି କହିଲେ— "ଏମିତି କଥା ଆଉ କହନାହିଁ । ଏହା ହ୍ଵାରା ଭୟଙ୍କର ବିପଦକୁ ନିମନ୍ତ୍ରଣ କରନାହିଁ ।" ତାପରେ ସେମାନେ ସମସ୍ତେ ଦୌଡ଼ି ଦୌଡ଼ି ପଳାଇଲେ ।

ବିଚାରି ବାଘେଖା ଦେଖିଲା--ତାକୁ ସାହାଯ୍ୟ କରିବାକୁ କୌଣସି ଲୋକ ଆଉ ମିଳିବେ ନାହିଁ । ଏକଥା ନିଶ୍ଚୟ ତାକୁ ଅନ୍ୟ ବ୍ୟବସ୍ଥା କରିବାକୁ ହେବ । ଏପରି ଅବସ୍ଥାରେ ବାଘେଖା ଅସହାୟ ଅନୁଭବ କଲାନାହିଁ । ସେ ଗାଁ ଛାଡ଼ି ଜଙ୍ଗଲରେ ପଶିଲା । ପ୍ରଥମେ ସେ ନାଗ ରାଜାଙ୍କୁ ଭେଟିଲା । ତାର ଦୁଃଖ ସେ ତାଙ୍କୁ ବିନୟରେ ସବୁ ଜଣାଇଲା । ବାଘେଖାର କଥାରେ ଦୁଃଖ ପୂରି ରହିଛି । ଏହା ନାଗ ରାଜା ଅନୁଭବ କଲେ । ସେ ବାଘେଖାକୁ କହିଲେ—"ପୁଅରେ ବ୍ୟସ୍ତ ହୁଅନାହିଁ । ମୁଁ ତମକୁ ମୋର ସମସ୍ତ ନାଗ ସେନା ଦେଉଛି । ସେମାନେ ତୁମ ସାଥୀରେ ଯିବେ । ତମକୁ ସାହାଯ୍ୟ କରିବେ ।"

ବାଘୋ ନାଗ ରାଜାଙ୍କୁ ଅଶେଷ ଧନ୍ୟବାଦ ଜଣାଇ ଆଗକୁ ଚାଲିଲା । ତାର ବିଷଧର ଜନ୍ତୁମାନଙ୍କର ବାଦଶାହ ସହିତ ଭେଟ ହେଲା । ସେ ତାର ଦୁଃଖ କଥା ତାଙ୍କୁ ବି କହିଲା । ବିଷଧର ବିଛା ବାଦଶାହ ତା ପ୍ରତି ଦୟାପର ହେଲେ । ସେ ତାଙ୍କର ସମସ୍ତ ବିଷଧର ଜନ୍ତୁମାନଙ୍କୁ ବାଘୋକୁ ସାହାଯ୍ୟ କରିବା ପାଇଁ ପଠାଇବେ ବୋଲି ପ୍ରତିଶ୍ରୁତି ଦେଲେ । ସେ ପୁଣି ଆଗକୁ ଚାଲିଲା । ତାର ପୁଣି ବିରୁଡ଼ଙ୍କର ରାଜା ସହିତ ସାକ୍ଷାତ ହେଲା ତାର ଦୟନୀୟ କାହାଣୀ ଶୁଣି ସେ ତାଙ୍କର ସମସ୍ତ ବିରୁଡ଼ି ପଠାଇ ସାହାଯ୍ୟ କରିବା ପାଇଁ କଥା ଦେଲେ । ସେ ପୁଣି ଆଗକୁ ଚାଲିଲା । ବାଟରେ ତାର ପିମ୍ପୁଡ଼ି ରାଣୀ, କୋକଶିଆଳି ରାଣୀ ଓ ଶୃଗାଳ-ମାନଙ୍କର ସରଦାର ସାଥିରେ ଦେଖାହେଲା । ସେ ସେମାନଙ୍କୁ ତାର ଦୁଃଖ କହିବାରୁ ସେ ସମସ୍ତେ ତାଙ୍କ ସୈନ୍ୟମାନଙ୍କୁ ବାଘୋ ସାଥିରେ ଯିବାକୁ ପଠାଇବେ ବୋଲି ପ୍ରତିଶ୍ରୁତି ଦେଲେ ।

ବାଘୋ ପୁଣି ଫେରି ଆସିଲା ମଣିଷ ମାନଙ୍କ ବସତିକୁ । ସେଠାରେ ସେ ପଶୁମାନଙ୍କ ପାଖରେ ଗୁହାରି କଲା । ସେଠାରେ ଗାଈ, ବଳଦ, ଘୁଷୁରି, ଗଧ, ହାତୀ ଓ ଓଟ ସମସ୍ତେ ସାହାଯ୍ୟ କରିବା ପାଇଁ ଆଗଭର ହେଲେ । ଏପରିକି ବାଘୋର ଦୁଃଖଭରା କାହାଣୀ ଶୁଣି ଲଙ୍କା ମରିଚ ରାଣୀ ରାଗରେ ଲାଲ୍ ହୋଇଗଲା । ତା ପାଖରେ ଝୁଲୁଥିବା କଖାରୁ ଫୁଲ କାନରେ ସେ ଧୀରେ ଧୀରେ କହିଲା—"ଏ ଗରିବକୁ ଆମକୁ ସାହାଯ୍ୟ କରିବାକୁ ହେବ ।" କଖାରୁ ଉଙ୍କ ଏଥିରେ ସମ୍ମତ ହେଲା । ତା ଦେଖାଦେଖିରେ ମୂଳା, ଗାଜର, ବାଇଗଣ ଓ ମଟର ଯୁଦ୍ଧରେ ଯୋଗ ଦେବାକୁ ପ୍ରସ୍ତୁତ ହେଲେ । ବାଘୋ ଦେଖିଲା— ତା ପଛରେ ଅନେକ ସୈନ୍ୟ । ତେଣୁ ସେ ପୁରୁଲି ବୁଲି ଯୁଦ୍ଧର ଢଳ ସ୍ଥିର କଲା ।

ଯୁଦ୍ଧ ବନ୍ଦ ହେବାରୁ ବୁଢ଼ା ଗଞ୍ଜା ରଡ଼ ପକାଇ ସୈନ୍ୟ-ମାନଙ୍କୁ ନଦିରୁ ଉଠାଇ ଦେଲା । ତାପରେ ପରେ ଜଙ୍ଗଲର ବାଲୁଆମାନଙ୍କର ହୁକା ହୋ ଚିତ୍କାର । ସେ ତ ହେଲା ତାଙ୍କର ଭୁର । ଝିଙ୍କିକାର ଝାଇଁ ଝାଇଁ ଶବ୍ଦ ହେଲା ଝାଞ୍ଜର ଶବ୍ଦ । ଯୁଦ୍ଧ ପାଇଁ ସୈନ୍ୟମାନଙ୍କର ପ୍ରସ୍ତୁତିର ଆହ୍ୱାନ ।

ସୈନ୍ୟମାନେ ସ୍ୱତନ୍ତ୍ର ଏକାଠି ଠୁଳ ହୋଇଗଲେ । ଏଥର ଯୁଦ୍ଧ ଯାତ୍ରା ଆରମ୍ଭ ହେଲା । ଏଇ ଦଳର ବାଙ୍ଗୋ ହେଲା ସେନାପତି । ସେ ଆଗେ ଆଗେ ଚାଲିଲା । ହାତରେ ତାର ଝାଡ଼ୁଆ ଛୁରୀ । ତା ପଛରେ ବତୁକ ପଲ ପଲ କରି ଉଡ଼ି ଯାଉଥାନ୍ତି । ତାଙ୍କ ପଛକୁ ଫଣା ଟେକି ସାପମାନେ ଚାଲିଲେ । ତା ପଛକୁ ବାଘ ପଲ । ତା ପଛକୁ ପଛ ଠେକାକଣିଆଳୀ, ଗଧ, ଖଚର, ଓଟ, ଓ ହାତୀ ଦଳ ଚାଲିଲେ । ଏହାଦେଖି କଖାରୁ, ଲଙ୍କା ମରିଚ, ମୂଳା, ଗାଜର ଓ ବାଇଗଣ ଗଛ ସମ୍ଭାଳି ପଡ଼ିଲେ ନାହିଁ । ସେମାନେ ତ ଆଗରୁ ବି କଥା ଦେଇଥିଲେ । ସେମାନେ ଯୁଦ୍ଧ କରିବାକୁ ଏମାନଙ୍କ ସହିତ ସାମିଲ ହୋଇଗଲେ ।

ସେତେବେଳକୁ ଠିକ୍ ଦ୍ୱିପ୍ରହର । ଜନଶୂନ୍ୟ ରାଜଧାନୀ । ରାଜପଥରେ ବାଙ୍ଗୋ ଓ ତାର ସହଚର ଗଣ ଚାଲିଥାନ୍ତି । ଦ୍ୱାର ଦର୍ଶନରେ । ଯେଉଁମାନେ ରାକ୍ଷସ ଉପୁରେ ବି ପଳାଇ ନ ଥିଲେ, ସେମାନେ ଏହି ସୈନ୍ୟମାନଙ୍କ ଉପରେ ପୁଷ୍ପ ବୃଷ୍ଟି କଲେ । ପ୍ରତ୍ୟେକ ବଡ଼ ସମସ୍ତେ ରାଜା ହାଣ୍ଡିକୁ ଆସି ମୁଣ୍ଡ ନୁଆଁଇ ଏଇ ସମାବେଶ ଯାହାକୁ ପ୍ରଣାମ କଲେ । ବିରାଟ ସୈନ୍ୟବାହିନୀ ରାଜ ପଥ ଛାଡ଼ି ରାକ୍ଷସ ଯେଉଁ ମୁଣ୍ଡି ଆରେ ରହେ, ସେଇ ଆଡ଼କୁ ଅଗ୍ରସର ହେଲେ ।

ବାଟରେ ଗୋଟିଏ ଖରସ୍ରୋତା ନଈ ପଡ଼ିଲା । ସୈନ୍ୟବାହିନୀ ଆଗକୁ ଯାଇ ନପାରି ଅଟକି ଗଲେ । ନଦୀ କପରି ପାରି ହେବେ, କାହାକୁ କିଛି ବୁଦ୍ଧି ଦେଖାଗଲା ନାହିଁ । କିନ୍ତୁ ସୈନ୍ୟମାନଙ୍କର ଏକାକଥା—ଆମେ ପଛେ ମରିଯିବୁ, ଫେରିବୁ ନାହିଁ । ବହୁ ଆଲୋଚନା ପରେ ସ୍ଥିର ହେଲା—ପୋଲ ତିଆରି ହେବ । ଯେଉଁଥିରେ ସେମାନେ ଝରଣା ପାରିହେବେ । ହାତୀମାନେ ନଦୀକୂଳେ ଥିବା ବଡ଼ ବଡ଼ ଗଛ ସବୁ ଉପାଡ଼ି ଆଣିଲେ । ସେସବୁକୁ ନଦୀରେ ପକାଇଲେ । ଯେତେ ନଙ୍ଗା ଗଛ ସୈନ୍ୟବାହିନୀରେ ଥିଲେ, ସେମାନେ ନଦୀରେ ପଡ଼ିଥିବା ଗଛ ସବୁକୁ ଟାଣି କରି ବାନ୍ଧି ପକାଇଲେ । କୋକିଶିଆଳୀ, ଖଚର, ଗଧମାନେ ମାଟି ପଥର ଆଣି ସେ ଗଛମାନଙ୍କ ଉପରେ ପକାଇଲେ । ଦେଖୁ ଦେଖୁ ସୁନ୍ଦର ପୋଲଟିଏ ହୋଇଗଲା । ତା ଉପରେ ସୈନ୍ୟମାନେ ଗର୍ବର ସହିତ ଯାତ୍ରା କରି ନଦୀ ଆରପଟେ ପହଞ୍ଚି ଗଲେ ।

ଏହା ଭିତରେ ରାତି ଆସିଗଲା । ସେମାନେ ସେଥିପାଇଁ ହତାଶ ହେଲେନାହିଁ କି ଯୁଦ୍ଧ ଯାତ୍ରା ବନ୍ଦ କଲେନାହିଁ । ସେପରୁ-ମାନେ ଆଗେ ଆଗେ ଯାଇ ରାସ୍ତା ଦେଖାଇଲେ ଜୁଳୁଜୁଳିଆ ପୋକ ରାସ୍ତା ଆଲୋକିତ କଲେ । ଶେଷରେ ସେମାନେ କଳା ରାକ୍ଷସର ବିରାଟ ଦୁର୍ଗ ପାଖରେ ପହଞ୍ଚି ଗଲେ । ତାର ଦୁର୍ଗର ଦ୍ୱାରରେ ବଡ଼ ମୋଟା ମୋଟା କବାଟ ଲାଗିଛି । ତା ଦେହରେ ବଡ଼ ବଡ଼ ଲୁହାକଣ୍ଟା ରହିଛି । ଏହା ଭିତରୁ ପଟ ବନ୍ଦ ଥିଲା । ସେଇ ଦୁର୍ଗ ଭିତରେ ରାକ୍ଷସ ନିଘୋଡ଼ ନିଦରେ ଶୋଇ ଘୁଙ୍ଗୁଡ଼ି ମାରୁଥିଲା ।

ଏପରି ମଜବୁତ କବାଟ ଭାଙ୍ଗିବା ତ ସହଜ କଥା ନୁହଁ । ଏହା ସୈନ୍ୟବାହିନୀ ଅନୁଭବ କଲେ । ତେଣୁ କବାଟ ଖୋଲି

ଯିବା ଅସମ୍ଭବ ସେମାନେ ମନେ କଲେ । ହେଟାମାନେ ସେମାନଙ୍କୁ ସାହାଯ୍ୟ କରିବାକୁ ଆଗେଇ ଆସିଲେ । ସିଧା ଘୁଚ ଉପରକୁ ସେମାନେ ଚଢ଼ିଗଲେ । ସାପମାନେ ସେଇ ନଟା ଉପରେ ଚଢ଼ି ଅଗଣା ପଟକୁ ଚାଲିଗଲେ । ସେମାନେ ଭିତର ପଟୁ ଦୁର୍ଗର କବାଟ ସବୁ ଖୋଲିଦେଲେ । ଏଥର ସୈନ୍ୟମାନେ ଦୁର୍ଗ ଭିତରେ ପଶିବାକୁ ଅସୁବିଧା ନ ଥିଲା । ତଥାପି ରାକ୍ଷସର ନିଦ ଭାଙ୍ଗିଲା ନାହିଁ । ଏହି ମଉକାରେ ସାପମାନେ ରାକ୍ଷସ ରାଜା ଦେହରେ ଗୁଡ଼ାଇ ହୋଇ ତାର ହାତ ଗୋଡ଼ ବାନ୍ଧି ପକାଇଲେ । ତାକୁ କାବୁ କରିଦେବାରୁ ସେ ଆଉ ଚଳି ପାରିଲା ନାହିଁ । ସୈନ୍ୟ-ମାନଙ୍କ ସହ ମୁକାବିଲା କରିବା ତା ପକ୍ଷରେ ଅସମ୍ଭବ ହୋଇ ଉଠିଲା ।

ସାପମାନେ ବେଢ଼ି ମାରିଲେ ; ବିଛୁମାନେ ତାକୁ କାମୁଡ଼ିବାରେ ଲାଗିଲେ । ହାତୀ ତା ଗୁଣ୍ଡ ଉପରେ ଚଢ଼ିଗଲା । ମୂଳା, ଗାଜର ତାର ନାକ ବାଟେ ପଶିଗଲେ । ଲଙ୍କା ମରିଚ ତା ଆଖିରେ ପଶିଗଲା । କୋକଶିଆଳୀ ଭାଲୁଆ ତାକୁ କାମୁଡ଼ି ପକାଇଲେ । ଏପରି ଅବସ୍ଥାରେ କଳା ରାକ୍ଷସ କଣ ବଂଚିପାରେ ? ତାର ମୃତ୍ୟୁ ହୋଇଗଲା ।

ଏହା ଦେଖି ଚଢ଼େଇମାନେ ଗୀତ ଗାଇଲେ । ସବୁ ପଶୁ ପକ୍ଷୀ ଚିତ୍କାର କଲେ । ସମସ୍ତେ ଆନନ୍ଦରେ ଅତ୍ୟନ୍ତ ଖୁସି । ଏ ଖବର ବିଜୁଳି ଭଳି ଚାରିଆଡ଼େ ଖେଳିଗଲା । ଦୂରକୁ ପଳାଇ ଥିବା ଲୋକମାନେ ଫେରି ଆସିଲେ, ପୁଣି ଗାଁ-ମଙ୍ଗପଲ ଜନପୂର୍ଣ୍ଣ ହୋଇଗଲା ।

ସମସ୍ତେ ଏକଜୁଟ ହେଲେ ଅସାଧ୍ୟ କିଛି ରହିବ ନାହିଁ ।



# ପୃଥିବୀର ଲୋକକଥା

(୧) ତିଏତ ନାମ, (୨) ଲାଦାଖ-୧, (୩) ଲାଦାଖ-୨, (୪) ପଞ୍ଜାବ-୧
(୫) ପଞ୍ଜାବ-୨, (୬) ପଞ୍ଜାବ-୩, (୭) ପଞ୍ଜାବ-୪, (୮) ପଞ୍ଜାବ-୫,
(୯) ଉତ୍ତର ପ୍ରଦେଶ-୧, (୧୦) ଉତ୍ତପ୍ରଦେଶ-୨, (୧୧) ପଞ୍ଜାବ-୬,
(୧୨) ଉତ୍ତର ପ୍ରଦେଶ-୩, (୧୩) ପଞ୍ଜାବ-୭, (୧୪) ଉତ୍ତର ପ୍ରଦେଶ-୪,
(୧୫) ମଧ୍ୟ ପ୍ରଦେଶ-୧, (୧୬) କାଶ୍ମୀର-୧, (୧୭) ଆସାମ-୧,
(୧୮) କାଶ୍ମୀର-୨, (୧୯) କାଶ୍ମୀର-୩, (୨୦) ଇହୁଦୀ-୧
(୨୧) ହିମାଚଳ ପ୍ରଦେଶ-୧, (୨୨) ଆସାମ-୨, (୨୩) ଶ୍ରୀଲଙ୍କା-୧,
(୨୪) ଋଷିଆ-୧, (୨୫) ଇହୁଦୀ-୨, (୨୬) ସାନ୍ତାଳ-୧ (୨୭) ଇଂଗ୍ଲିଶ-୧,
(୨୮) ମଧ୍ୟ ପ୍ରଦେଶ-୨, (୨୯) ଶ୍ରୀଲଙ୍କା-୨, (୩୦) ସାନ୍ତାଳ-୨,
(୩୧) ସାନ୍ତାଳ-୩, (୩୨) ସାନ୍ତାଳ-୪, (୩୩) ସାନ୍ତାଳ-୫),
(୩୪) ସାନ୍ତାଳ-୬, (୩୫) ସାନ୍ତାଳ-୭, (୩୬) ନେପାଳ-୧,
(୩୭) ହରିୟାନା-୧, (୩୮) ସାନ୍ତାଳ-୮, (୩୯) ସାନ୍ତାଳ-୯,
(୪୦) ସାନ୍ତାଳ-୧୦, (୪୧) ସାନ୍ତାଳ-୧୧, (୪୨) ସାନ୍ତାଳ-୧୨,
(୪୩) ସାନ୍ତାଳ-୧୩, (୪୪) ସାନ୍ତାଳ-୧୪, (୪୫) କନ୍ଧ-୧,
(୪୬) ନେପାଳ-୨ (୪୭) ତିବ୍ବତ-୧, (୪୮) ଇହୁଦୀ-୩,
(୪୯) ଇହୁଦୀ-୪, (୫୦) ଜାପାନ-୧ (୫୧) ତାମିଲ୍‌ନାଡୁ-୧,
(୫୨) ତାମିଲ୍‌ନାଡୁ-୨, (୫୩) ତାମିଲ୍‌ନାଡୁ-୩, (୫୪) ତିବ୍ବତ-୨.
(୫୫) ଫିଲ୍‌ପାଇନ୍-୧, (୫୬) ଫିଲ୍‌ପାଇନ୍-୨, (୫୭) ଚୀନ୍-୧,
(୫୮) ଫ୍ରାନ୍‌ସ-୧, (୫୯) ଫ୍ରାନ୍‌ସ-୨ (୬୦) ସ୍କଟ୍‌ଲ୍ୟାଣ୍ଡ-୧ ।

ନୀଳକଣ୍ଠେଶ୍ୱର ଶିକ୍ଷା ପ୍ରକଳ୍ପ
ପୋ.: ଦିଘାଳ, ଜିଲ୍ଲା : ପୁରୀ
ମହାନ୍ତିପଡ଼ା, କାଫଲା, କଟକ-୨

ପ୍ରାପ୍ତି ସ୍ଥାନ :-ଗ୍ରନ୍ଥାଳୟ, ପଥିକ, ଭୁବନେଶ୍ୱର, ପଦ୍ମାଳୟା, ବାଦାମବାଡ଼ି,
କଟକ ଟ୍ରେଡ଼ିଂ କମ୍ପାନୀ, ବାଲୁବଜାର, କଟକ ।